## ବ୍ୟବହାର ପାଇଁ ସୂଚନା

ବହିଟିରେ ମୋଟରେ ୫୩ଟି ପରଖ ରହିଛି । ଏଗୁଡ଼ିକୁ ତିନୋଟି ଭାଗରେ ରଖାଯାଇଛି । ଅଳିଆକୁ ଚିହ୍ନିବା, ଅଳିଆକୁ ନେଇ ମଜା କାମ କରିବା ଓ ତୃତୀୟ ଭାଗଟି ହେଉଛି ଅଳିଆରୁ ବିଜ୍ଞାନ ପରଖ । ଏସବୁ କାମ ଯେ କୌଣିସ ପିଲା କରିପାରିବ । ଏଗୁଡ଼ିକୁ ଇକୋକ୍ଲବର କାମ ଭାବରେ ମଧ୍ୟ କରିହେବ । ଶ୍ରେଣୀରେ ପାଠ୍ୟକ୍ରମ ସାରିବା ଭଳି ତରତର ହୋଇ ନକରି ପିଲା ବୁଝିପାରିବା ଭଳି ତା' ସହ ମିଶି କଲେ ପ୍ରଭାବ ନିଶ୍ଚୟ ପଡ଼ିବ । ଅଳିଆ ସହ କାମ କରିବା ବେଳେ ବିପଦର ସମ୍ଭାବନା ରହିଛି । ତେଣୁ ଜଣେ ବଡ଼ଲୋକ ପାଙ୍ଗରେ ରହିବା ଜରୁରୀ ଓ କେତେଗୁଡ଼ିଏ ନିୟମ ମାନିବା ଦରକାର ।

୧. ପରଖ ପାଇଁ ବ୍ୟବହୃତ ଉପକରଣଗୁଡ଼ିକ ଅଲଗା କରି ରଖିବ । ଖାଇବା କାମରେ ଲାଗୁଥିବା ବାସନ ଏଥିପାଇଁ ବ୍ୟବହାର ନକରିବା ଭଲ ।

୨. ପରଖ କରିସାରିବା ପରେ ନିଜର ହାତ, ବ୍ୟବହୃତ ଉପକରଣଗୁଡ଼ିକୁ ଭଲ ଭାବରେ ଧୋଇ ପରିଷ୍କାର କରିବ । ପରଖ କରିବା ଜାଗା ମଧ୍ୟ ସଫା କରିବା ଜରୁରୀ ।

୩. ଡାକ୍ତରଖାନା ମଇଳା ବା ସେହିଭଳି ବିଷାକ୍ତ ମଇଳାକୁ ନେଇ କାମ କରିବା ବେଳେ ହାତରେ ଦସ୍ତାନା ପିନ୍ଧିବା ଦରକାର ।

୪. ଅଳିଆ ଗଦାରେ ବୁଲୁଥିବା ଜୀବଜନ୍ତୁଙ୍କ ପ୍ରତି ସାବଧାନ ହେବ ।

ଏଥିରେ ଥିବା ଅନେକଗୁଡ଼ିଏ କାମ କେବଳ ପରଖ ଭାବରେ ନକରି ନିୟମିତ ଅଭ୍ୟାସରେ ପକାଇବା ଦରକାର ।

ମଲାଟର ଚିତ୍ର: ମଣିଷର ଅଳିଆରେ ତିଆରି ମଣିଷ ମୂର୍ତ୍ତିକୁ ମଣିଷ ଦେଖୁଛି ।

୧୯୯୬ ମସିହାରେ ଜର୍ମାନୀ ଦେଶର ଶିଳ୍ପୀ ହା ସୁଲ୍‌ଜ୍ ବିଭିନ୍ନ ପ୍ରକାରର ଅଳିଆକୁ ଯୋଡ଼ି କିଛି ମଣିଷ ମୂର୍ତ୍ତି ତିଆରି କଲେ । ପ୍ରତିଟି ମୂର୍ତ୍ତି ଥିଲା ମଣିଷ ଆକାରର ଏବଂ ସେଗୁଡ଼ିକର ମୋଟ ସଂଖ୍ୟା ଥିଲା ୧୦୦୦ । ସବୁ ମୂର୍ତ୍ତିର ମୋଟ ଓଜନ ଥିଲା ୩୫ ଟନ୍ ।

ଗଲା ୮ ବର୍ଷ ଧରି ସୁଲ୍‌ଜ୍‌ଙ୍କର 'ବର୍ଜ୍ୟ ମଣିଷ' କଳାକୃତି ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରଦର୍ଶିତ ହେଉଛି । ଏବେ ଏହି ପ୍ରଦର୍ଶନୀ ଲାଗିଛି ଇଟାଲୀର ରୋମ ନଗରୀରେ । ଆଉ କେତେ ଦେଶ ବୁଲିଲା ପରେ ୨୦୦୮ରେ ତାହା ଆଣ୍ଟାର୍କଟିକାରେ ଦେଖାଯିବ ।

ଏହି ପ୍ରଦର୍ଶନୀ ମାଧ୍ୟମରେ ସୁଲ୍‌ଜ୍ କହିବାକୁ ଚାହାନ୍ତି ଯେ ଆବର୍ଜନା ସୃଷ୍ଟି କରୁଥିବା ମଣିଷ ନିଜେ ହିଁ ବର୍ଜ୍ୟ ପାଲଟିବ ।

# ଅଳିଆରୁ ମଜା କାମ

ସଂକଳନ
ପୁଷ୍ପଶ୍ରୀ ପଟ୍ଟନାୟକ

ଚିତ୍ର
ସରସୀ ଦାସ

ପ୍ରକାଶନ
**ସୃଜନିକା**
ଜାଗମରା, ଡାକ-ଖଣ୍ଡଗିରି
ଭୁବନେଶ୍ୱର ୭୫୧ ୦୩୦
ଦୂରଭାଷ: ୦୬୭୪-୨୩୫୦୬୬୪

ମୁଦ୍ରଣ
ଶୋଭନ
୧୦୬, ଆଚାର୍ଯ୍ୟ ବିହାର
ଭୁବନେଶ୍ୱର ୭୫୧ ୦୧୩



ପ୍ରଥମ ସଂସ୍କରଣ: **ମାର୍ଚ୍ଚ ୨୦୦୭**

ମୂଲ୍ୟ: **୨୦.୦୦ ଟଙ୍କା**

# Fun Activities with Garbage

Compilation
Puspashree Pattnaik

Illustration
Sarasi Das

**Publication**
SRUJANIKA
Jagamara, PO: Khandagiri
Bhubaneswar 751 030
Tel: 0674-2350664

**Printing**
Shovan
106, Acharya Bihar
Bhubaneswar 751 013



First Edition: **March 2007**

Price: **Twenty Rupees**

# କଥା ଦୁଇ ପଦ

ଆଜିକାଲି ଯୁଆଡ଼େ ଚାହିଁବ ସିଆଡ଼େ ଜୁଳ୍ ଜୁଳ୍ ମଇଳା ଗଦା ହୋଇ ରହିଛି । ରାସ୍ତାକଡ଼, ପୋଖରୀ କୂଳ, ନାଳ, ବଗିଚା, ପାର୍କ, ସବୁଆଡ଼େ ମଇଳା ପଲିଥିନ୍ ମୁଣି, ଗୁଟ୍‌କା ପ୍ୟାକେଟ, ଜରି ଆଦି ପଡ଼ିଛି । ଏସବୁ କେବଳ ଅସନା ଦେଖାଯାଏ ନାହିଁ, ମଣିଷର ସ୍ୱାସ୍ଥ୍ୟ ଉପରେ ମଧ୍ୟ ବହୁତ ଖରାପ ପ୍ରଭାବ ପକାଏ । ଆମର ଜୀବନ ଧାରା ଯେତେ ଯେତେ ଆଗୁଆ ହେଉଛି ଆମର ଅଳିଆର ପ୍ରକାର ଓ ପରିମାଣ ସେତିକି ବଢ଼ି ବଢ଼ି ଯାଉଛି ।

ଏବେ ଆସୁଛି ଗୋଟିଏ ପ୍ରକାରର ନୂଆ ଅଳିଆ । ତାହା ହେଉଛି ଇ-ଅଳିଆ । ଆଜିକାଲି ସହରାଞ୍ଚଳରେ ଘରେ ଘରେ କମ୍ପ୍ୟୁଟର । ଦୋକାନ, ବଜାର, ରେଳଷ୍ଟେସନ୍, ଡାକ୍ତରଖାନା ଆଦି ସବୁଠି କମ୍ପ୍ୟୁଟରର ବ୍ୟବହାର । ଗାଁଗହଳିରେ ମଧ୍ୟ ଟେଲିଭିଜନ୍, ରେଡିଓ, ଟେପ୍ ରେକର୍ଡର୍ ଓ ଅଳ୍ପ କିଛି ସଂଖ୍ୟାରେ କମ୍ପ୍ୟୁଟର ମଧ୍ୟ ରହିଛି । ଏହାର କୌଣସି ଅଂଶ ଖରାପ ହେଲେ ଆଉ ସଜଡ଼ା ଯାଉନାହିଁ । ଫିଙ୍ଗି ଦେଇ ପୁଣି ଥରେ ନୂଆ କିଣା ଯାଉଛି । ଫଳରେ ଏସବୁ ଅସଜଡ଼ା ଅଂଶଗୁଡ଼ିକ ବହୁତ ପରିମାଣରେ ଗଦା ହୋଇ ରହୁଛି । ଏଗୁଡ଼ିକ ତିଆରି ପାଇଁ ବହୁତ ମୂଲ୍ୟବାନ ଓ ବିରଳ ଧାତୁ ବ୍ୟବହାର କରାଯାଏ । ଅନେକ ସମ୍ବଳ ଓ ଶକ୍ତି ସେଥିପାଇଁ ଖର୍ଚ୍ଚ ହୋଇଥାଏ । ସେସବୁର କିଛି ବିଷାକ୍ତ ଗୁଣ ମଧ୍ୟ ରହିଥାଏ । ଏସବୁକୁ ପୁଣି ଥରେ ବ୍ୟବହାର କରିବା ପାଇଁ କେହି ବିଶେଷ ଚିନ୍ତା କରୁନାହାନ୍ତି ।

ତେବେ ଏବେ ଅଳିଆ ବଢ଼ୁଛି କାହିଁକି ? ଆଗେ କ'ଣ ଲୋକମାନେ କିଛି ଜିନିଷ ବ୍ୟବହାର କରୁନଥିଲେ ? ଏବେ ଏହା ଏତେ ଗମ୍ଭୀର ସମସ୍ୟା କାହିଁକି ସୃଷ୍ଟି କରୁଛି ? ଟିକିଏ ଚିନ୍ତା କଲେ ଆମେ ଏହି ପ୍ରଶ୍ନର ଉତ୍ତର ପାଇପାରିବା । ଆଗେ ଦୋକାନକୁ ଗଲେ ଆମେ ସାଙ୍ଗରେ ମୁଣି ନେଇ ଯାଉଥିଲେ । ଦୋକାନୀ ଆମକୁ ଦୁଙ୍କାରେ ଓଜନ କରି ଜିନିଷ ଦେଉଥିଲା, ପରିବା ସିଧା ମୁଣିରେ ପଡୁଥିଲା । ଏବେ କିନ୍ତୁ ଅଧିକାଂଶ ଜିନିଷ ଆଗରୁ ଓଜନ ହୋଇ ଜରିମୁଣିରେ ପ୍ୟାକେଟ ହୋଇ ରହିଛି । ଘରକୁ ଆସି ଖାଲି କରିବା ପରେ ଜରିମୁଣିର ଆଉ କିଛି କାମ ନାହିଁ । ସେଗୁଡ଼ିକ ଅଳିଆ ହୋଇ ଜମିରହୁଛି ।

ଏ ଦିଗରେ ଆମେ କିଛି କରିପାରିବା କି ? ନିଜେ ଆଉ ଅଳିଆ ସୃଷ୍ଟି କରିବା କମାଇବା, ଅଳିଆରୁ ଯେଉଁ ଜିନିଷ ପୁଣି ଥରେ ବ୍ୟବହାର ହୋଇପାରିବ ସେସବୁ ପୁଣି ବ୍ୟବହାର କରିବା । ସେଥିପାଇଁ ନିଜେ କିଛି ଦିଗରେ ଧ୍ୟାନ ଦେବା ।

ବଜାର ଗଲାବେଳେ ସାଙ୍ଗରେ ମୁଣିଟିଏ ନେଇ ଯିବା ।

ଅଯଥା ଜରିମୁଣି ବା ପଲିଥିନ୍ ପ୍ୟାକେଟ ଆଣିବା ନାହିଁ ।

ଜରିମୁଣିରେ ଆଗରୁ ପ୍ୟାକେଟ ହୋଇ ରହିଥିବା ଜିନିଷ ଅପେକ୍ଷା ଠୁଙ୍ଗାରେ ଓଜନ କରି ଜିନିଷ ଆଣିବା । ଯେତିକି ବି ଜରିମୁଣି ଆଣିବା ତାକୁ ବାରମ୍ବାର ବ୍ୟବହାର କରିବା ।

ଦୋକାନୀକୁ କାଗଜ ଠୁଙ୍ଗାରେ ଜିନିଷ ଦେବା ପାଇଁ ଅନୁରୋଧ କରିବା ।

ଦରକାର ନଥିବା ଜିନିଷ କିଣିବା ନାହିଁ ।

କିଛି ବି ଖରାପ ନହୋଇଥିଲେ ଜିନିଷ ଫିଙ୍ଗିବା ନାହିଁ ।

ଜୀବଅପାଚ୍ୟ ଜିନିଷକୁ ବାଛି ଅଲଗା ରଖିବା ଓ କବାଡ଼ିବାଲାକୁ ଦେଇଦେବା ।

ଏସବୁ କାମ କେବଳ ଆମେ ନିଜେ କଲେ ହେବନାହିଁ । ଆମ ଘରର ଅନ୍ୟଲୋକ ଓ ସାଙ୍ଗମାନେ ଯେପରି ଏହା ମାନନ୍ତି ତାହା ଦେଖିବା ଓ ସେମାନଙ୍କୁ ବୁଝାଇବା ମଧ୍ୟ ଆମର ଦାୟିତ୍ୱ । ନହେଲେ ଆଗକୁ ପରିସ୍ଥିତି ଆଉ ସମ୍ଭାଳି ହେବନାହିଁ ।

ଅଳିଆ ନାଁରେ ଫିଙ୍ଗା ଯାଉଥିବା କିଛି ଜିନିଷ ସୃଜନଶୀଳ ମଣିଷ ପାଇଁ ଅତି ମୂଲ୍ୟବାନ ହୋଇପାରେ । ପିଲାମାନଙ୍କର ସୃଜନଶୀଳତାର ବିକାଶ ପାଇଁ ଏଗୁଡ଼ିକ ବିଶେଷ ସହାୟକ ହୋଇପାରନ୍ତି । କିଛି ଜିନିଷକୁ ଲଗାଇ ନୂଆ ଜିନିଷ ତିଆରି କରିବା ବା ସେସବୁକୁ କିଛି ନୂଆ ବାଟରେ ବ୍ୟବହାର କରିବା କାମରେ କଳ୍ପନା ଶକ୍ତିର ବିକାଶ ଘଟେ । ଏହି କାମ ଫଳରେ ଅଳିଆ ପ୍ରତି ଦୃଷ୍ଟିକୋଣ ମଧ୍ୟ ବଦଳିଯାଏ ।

ଏହିସବୁ କଥାକୁ ଆଖିରେ ରଖି ଏହି ବହିଟିର ପ୍ରସ୍ତୁତି । ବହିଟିରେ ଥିବା କାମଗୁଡ଼ିକ ଦୁଇ ଭାଗରେ ରଖାଯାଇଛି । ପ୍ରଥମ ଭାଗଟି ଅଳିଆକୁ ବୁଝିବା ଓ ଦ୍ୱିତୀୟ ଭାଗଟି ସେହି ଅଳିଆକୁ ନେଇ କିପରି ମଜା କାମ କରିପାରିବା । ପିଲାମାନଙ୍କୁ ନିଶ୍ଚୟ କାମଗୁଡ଼ିକ ବହୁତ ମଜା ଲାଗିବ । କିନ୍ତୁ ଏଥିପାଇଁ ବଡ଼ମାନଙ୍କ ସହଯୋଗ ଦରକାର । କାମଗୁଡିକ ଇକୋକ୍ଲବର ପିଲାମାନଙ୍କୁ ନେଇ କରିହେବ ବା ବିଜ୍ଞାନ କ୍ଲବର କାମ ଭାବରେ ମଧ୍ୟ କରିହେବ । କିନ୍ତୁ ବାକି ସବୁ କାମ ଭଳି ଏସବୁ କାମ ବି ପିଲାଙ୍କ ସହ ନିୟମିତ ନକଲେ ପିଲା ଉପରେ ତା'ର ପ୍ରଭାବ ପଡ଼ିବ ନାହିଁ ।

ସୃଜନିକାର ସବୁ କାମ ଭଳି ଏହି ବହିଟି ମଧ୍ୟ ଅନେକ ସାଥିଙ୍କ ସହଯୋଗରେ ପ୍ରସ୍ତୁତ ହୋଇଛି । ଏହାର ଅଧିକାଂଶ କାମଗୁଡ଼ିକ ରବିବାର କ୍ଲବ ପିଲାମାନେ କରିଛନ୍ତି । କରିବା ପରେ ସେମାନେ ତାଙ୍କ ଘରୁ ବି ଅଳିଆ କମାଇବା ପାଇଁ ଚେଷ୍ଟା କରିଛନ୍ତି । ଆଶାକରୁଛୁ ବହିଟି ପାଇବା ପରେ ଏହାର ପାଠକ ସାଥିମାନେ କାମଗୁଡ଼ିକ କରିବେ ଓ ନିଜେ ଅଳିଆ କମାଇବା ପାଇଁ ଚେଷ୍ଟା କରିବେ । ଆମେ ସମସ୍ତେ ଚେଷ୍ଟା କଲେ ଅଳିଆ ଆଉ ସମସ୍ୟା ହୋଇ ରହିବ ନାହିଁ ।

ମାର୍ଚ୍ଚ ୨୦୦୭ — ସୃଜନିକା

# ସୂଚୀପତ୍ର

# ଅଳିଆ କ'ଣ

ଏବେ ସହର ଅଞ୍ଚଳରେ ଲୋକ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ଗାଁମାନଙ୍କରେ କାମ ନ ମିଳିବାରୁ ଲୋକମାନେ ସହରକୁ ଆସିବାକୁ ବାଧ୍ୟ ହେଉଛନ୍ତି । କିନ୍ତୁ ସହରଗୁଡ଼ିକରେ ଏତେ ଲୋକଙ୍କର ରହିବା ପାଇଁ ସାଧାରଣ ବ୍ୟବସ୍ଥା ନାହିଁ । ଏସବୁ ଜାଗାରେ ଉପଯୁକ୍ତ ପରିମଳ ବ୍ୟବସ୍ଥାର ଅଭାବ ବିଶେଷ ଭାବରେ ଦେଖାଯାଉଛି । ସେଥିପାଇଁ ଆଜିକାଲି ସହରମାନଙ୍କରେ ଯୁଆଡ଼େ ଦେଖିବ କୁଢ଼ କୁଢ଼ ଅଳିଆ ଜମା ହୋଇ ରହିଛି ।

ତେବେ ଅଳିଆ କହିଲେ ପ୍ରକୃତରେ କ'ଣ ବୁଝାଯାଏ ? ଯେଉଁ ଜିନିଷ ଆମର ଆଉ ଦରକାରରେ ଆସୁନାହିଁ ବା ଆମେ ବ୍ୟବହାର ନକରି ଫିଙ୍ଗି ଦେଉଛେ ତାହାକୁ ସାଧାରଣ ଭାବରେ ଆମେ ଅଳିଆ କହୁଛେ । ଏହି ଦୃଷ୍ଟିରୁ ଦେଖିଲେ ଫୋପାଡୁଥିବା ଲୋକ ପାଇଁ ଏହା ଆଉ କାମରେ ଲାଗେନାହିଁ । କିନ୍ତୁ ବ୍ୟାପକ ଅର୍ଥରେ ଦେଖିଲେ ଆମକୁ ଆଉ କିଛି ବିଷୟ ବିଚାର କରିବାକୁ ହେବ । ସେହି ବିଷୟ ଭିତରେ ରହିବ - ଜଣଙ୍କର ଅଳିଆ ଆଉ କାହା କାମରେ ଆସିପାରିବ କି ? ଅନ୍ୟ କେଉଁ ବାଟରେ ତାହା ଫୋପାଡୁଥିବା ଲୋକ ପାଇଁ ମଧ୍ୟ ବ୍ୟବହାର ଉପଯୋଗୀ କରାଯାଇ ପାରିବ କି ? ଇତ୍ୟାଦି ।

ନିତିଦିନିଆ ଅନୁଭୂତିରୁ ଆମେ ଜାଣିଛେ ଯେ ସାଧାରଣତଃ ଜଣେ ଫିଙ୍ଗିଥିବା ଜିନିଷ ଆଉ କେତେଜଣଙ୍କ କାମରେ ଲାଗିଯାଏ । ଅଳିଆ ଗଦାରେ ପଡ଼ିଥିବା ରବର, ପ୍ଲାଷ୍ଟିକ, ଜରିମୁଣି, କାଠ ଖଣ୍ଡ, କାଚ, ଲୁହା ଟୁକୁଡ଼ା, କାଗଜ ଆଦି କବାଡ଼ିବାଲା ନେଇଯାଏ । ପରିବା ଚୋପା, ପତ୍ର ଆଦି ଗାଈଗୋରୁ ଖାଇଦିଅନ୍ତି । ମାଛକଣ୍ଟା, ହାଡ଼ ଆଦି ଖାଇବା ପାଇଁ କୁକୁର, ବିଲେଇ ଧାଡ଼ି ବାନ୍ଧନ୍ତି, କଳିଗୋଳ କରି ସେସବୁକୁ ସଫା କରିଦିଅନ୍ତି । ତା'ପରେ ଯାହା ରହିବ ସେଥିରୁ କାଠିକୁଟା, କନା, ସୁତୁଲୀ ଆଦି କାଉ, ବଣିଙ୍କର ବସା ବନ୍ଧା କାମରେ ଲାଗେ । ତେଣୁ ଅଳିଆ ଗଦାର ବେଶ୍ କିଛି ଅଂଶ ବିଭିନ୍ନ ଜୀବଙ୍କର କାମରେ ଲାଗିଯାଏ । ତା'ପରେ ଯାହା ବଳିପଡ଼େ ସେଗୁଡ଼ିକ ଧୀରେ ଧୀରେ ଜିଆ, ଅଣୁଜୀବଙ୍କ କାମ ଫଳରେ ମାଟିରେ ମିଶିଯାଏ, ଆଉ ନୂଆ ଗଛଲତା ବଢ଼ିବାରେ ସାହାଯ୍ୟ କରେ ।

ଗୋଟିଏ ସାଧାରଣ ଜନବସତି ଅଞ୍ଚଳରେ ଏହିପରି ଅଳିଆକୁ ଆଉ କିଏ ବ୍ୟବହାର କରିନିଏ । କିନ୍ତୁ ଯଦି ଅଳିଆର ପରିମାଣ ବହୁତ ବେଶୀ ହୁଏ ତେବେ ସେଗୁଡ଼ିକ ସେହିଭଳି ଗଦା ହୋଇ ରହେ । ସେତେବେଳେ ତାହା ମଣିଷ ପାଇଁ ସମସ୍ୟାର କାରଣ ହୁଏ । ସେଥିରୁ ଆସୁଥିବା ଅସୁବିଧା ଭିତରେ ଥାଏ ସାଧାରଣ ଖରାପ ଦୃଶ୍ୟ ଓ ଗନ୍ଧର ସମସ୍ୟାରୁ ମାଟି, ପାଣି, ପବନ ଓ ଜୀବଜନ୍ତୁଙ୍କ ସ୍ୱାସ୍ଥ୍ୟ ଉପରେ ତା'ର ବିଷାକ୍ତ ପ୍ରଭାବ ପର୍ଯ୍ୟନ୍ତ । ଏହି ଅଳିଆ ଆମ ପାଇଁ ଗୋଟିଏ ସମସ୍ୟା ହୋଇଯାଏ ।

ଅଳିଆ ଖାଲି ଯେ ବିଭିନ୍ନ ଅସୁବିଧା ଆଣେ ତାହା ନୁହେଁ । ଅଳିଆ ବାଟ ଦେଇ କେତେ ଶକ୍ତି ଏବଂ ସମ୍ବଳ ନଷ୍ଟ ହୋଇଯାଏ । ଧାତୁ, କାଚ ଓ ପ୍ଲାଷ୍ଟିକ ଜିନିଷ ତିଆରି ପାଇଁ ଅନେକ କଞ୍ଚାମାଲ ଓ ଶକ୍ତି ଖର୍ଚ୍ଚ ହୋଇଥାଏ । ଫୋପାଡ଼ିଦେବା ଫଳରେ ତାହା ପୁରା ନଷ୍ଟ ହୁଏ ।

ଏବେ ଦେଖିବା ଅଳିଆ କେତେ ପ୍ରକାରର ହୋଇପାରେ ।

**କ. ଘରୋଇ ଅଳିଆ:** ଏ ପ୍ରକାର ଅଳିଆ ଘରମାନଙ୍କରୁ ବାହାରିଥାଏ । ଏହା ରୋଷେଇ, ସଫାସଫି, ମରାମତି, ଘରସଜା ଆଦି ଘରର ନିତିଦିନିଆ କାମରୁ ବାହାରେ । ଏହା ଭିତରେ ଥାଏ ଖାଲି ଡବା, ପୁରୁଣା ଲୁଗା, ବହିପତ୍ର, କାଗଜ, ପୁରୁଣା ଆସବାବପତ୍ର ଇତ୍ୟାଦି ।

**ଖ. ପୌର ଅଳିଆ:** ପୌର ଅଳିଆ ପୌରପାଳିକାର କାମରୁ ବାହାରି ଥାଏ । ଯଥା - ରାସ୍ତା ଅଳିଆ, ମଳାଜୀବ, ହାଟ ଅଳିଆ ଓ ପରିତ୍ୟକ୍ତ ଗାଡ଼ିମଟର ଆଦି । ଦେଖିବାକୁ ଗଲେ ପୌର ଅଳିଆରେ ଘରୋଇ, ଆନୁଷ୍ଠାନିକ ତଥା ବ୍ୟାବସାୟିକ ଅଳିଆ ମିଶି ରହିଥାଏ ।

**ଗ. ବ୍ୟାବସାୟିକ ଅଳିଆ:** ଏପ୍ରକାର ଅଳିଆ ମୁଖ୍ୟତଃ ବିଭିନ୍ନ ଅଫିସ୍, ଦୋକାନ, ହୋଟେଲ, ହାଟ, ଗୋଦାମ ତଥା ଅନ୍ୟାନ୍ୟ ବ୍ୟାବସାୟିକ କେନ୍ଦ୍ରରୁ ବାହାରିଥାଏ ।

**ଘ. ଆନୁଷ୍ଠାନିକ ଅଳିଆ:** ବିଭିନ୍ନ ପ୍ରକାରର ଶିକ୍ଷାନୁଷ୍ଠାନ, ଡାକ୍ତରଖାନା ତଥା ଗବେଷଣା ପ୍ରତିଷ୍ଠାନ ପରି ବିଭିନ୍ନ ଅନୁଷ୍ଠାନରୁ ବାହାରୁ ଥିବା ଅଳିଆକୁ ହିଁ ଆନୁଷ୍ଠାନିକ ଅଳିଆ କୁହାଯାଏ । ଏଥିରୁ କିଛି ଅଳିଆ ପରିବେଶ ଓ ଜନସ୍ୱାସ୍ଥ୍ୟ ପାଇଁ ବିପଦଜନକ ହୋଇଥାଏ ।

**ଙ. ଖାଦ୍ୟ ଅଳିଆ:** ମୁଖ୍ୟତଃ ରୋଷେଇ, ଖାଦ୍ୟର ପ୍ରସ୍ତୁତି, ବିକ୍ରି, ଜମା କରିବା ଆଦି କାମରୁ ବାହାରୁ ଥିବା ପ୍ରାଣୀ ଓ ଉଦ୍ଭିଦ ଅବଶିଷ୍ଟାଂଶକୁ ଖାଦ୍ୟ ଅଳିଆ ଆବର୍ଜନା କୁହାଯାଏ । ଏହି ଜୈବିକ ଅଳିଆ ବିଭିନ୍ନ ଅଣୁଜୀବଙ୍କ ପାଇଁ ଭଲ ଖାଦ୍ୟ ହୁଏ, ତେଣୁ ତାହା ସହଜରେ ପଚିଯାଏ । ଅଣୁଜୀବଙ୍କର ପାଚନ କାମ ଫଳରେ ସେଥିରୁ ଦୁର୍ଗନ୍ଧ ବାହାରେ । ଏଭଳି ଅଳିଆ ଜମିରହିଲେ ପୋକ, ମାଛି, ମୂଷା ଆଦିଙ୍କର ସଂଖ୍ୟା ବଢ଼ିବାରେ ସାହାଯ୍ୟ କରେ ଏବଂ ପରୋକ୍ଷ ଭାବରେ ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟିକରେ ।

**ଚ. ଆବର୍ଜନା:** ଘର, ବ୍ୟାବସାୟିକ କେନ୍ଦ୍ର ତଥା ଅନୁଷ୍ଠାନ ଆଦିରୁ ବାହାରୁଥିବା ଅଳିଆରୁ ଖାଦ୍ୟ ଅଳିଆ ଓ ପାଉଁଶକୁ ବାଦ ଦେଲେ ବଳକା କଠିନ ଅଳିଆକୁ ଆବର୍ଜନା କୁହାଯାଏ । ଏହି ଦୃଷ୍ଟିରୁ ଦେଖିଲେ କୌଣସି ନିର୍ଦ୍ଦିଷ୍ଟ ଗୁଣ ଧର୍ମ ନଥିବା ଅଳିଆ ହିଁ ଆବର୍ଜନା ।

**ଛ. ପାଉଁଶ:** ଘର, ବିଭିନ୍ନ ଅନୁଷ୍ଠାନ ଏବଂ କାରଖାନାମାନଙ୍କରେ କାଠ, କୋଇଲା ଆଦି ବିଭିନ୍ନ ଇନ୍ଧନ ପଦାର୍ଥକୁ ଜାଳି ରୋଷେଇ ବା ତାପ ଉତ୍ପାଦନ କରାଯାଇଥାଏ । ଏଗୁଡ଼ିକ ଜଳିବା ପରେ ପାଉଁଶ ବାହାରିଥାଏ । ସେହି ପାଉଁଶ ମଧ୍ୟ ଏକ ପ୍ରକାରର କଠିନ ଅଳିଆ ।

**ଜ. ବୃହଦାକୃତି ଅଳିଆ:** ଘରକରଣା ଜିନିଷରୁ କିଛି ଆକାରରେ ବେଶ୍ ବଡ଼ ହୋଇଥାଏ । ଆଧୁନିକ ଜଳଣିରେ ଏସବୁ ବେଶି ଦେଖାଯାଏ । ବ୍ୟବହାର ଅନୁପଯୋଗୀ ହେଲେ ଏସବୁକୁ ଅଳ୍ପ ଜାଗାରେ

ରଖାଯାଇ ପାରେ ନାହିଁ । ପ୍ରେସର କୁକର, ରେଫ୍ରିଜରେଟର, ଆସବାବପତ୍ର, ଲୁଗାଧୁଆ ମେସିନ, ଗାଡ଼ି ଓ ତା'ର ବିଭିନ୍ନ ଅଂଶ ଆଦି ଏହି ଶ୍ରେଣୀର କଠିନ ଅଳିଆ । କାଠ ଗଡ଼ି, ବଡ଼ ଗଛ ଆଦିକୁ ମଧ୍ୟ ଏହି ଶ୍ରେଣୀର ଅଳିଆରେ ଗଣାଯାଏ ।

ଝ. **ରାସ୍ତା ଓଳା ଅଳିଆ:** ରାସ୍ତା, ଗଳି, ପାର୍କ ତଥା ଅନ୍ୟାନ୍ୟ ଖୋଲାସ୍ଥାନରୁ ସଂଗୃହୀତ ଅଳିଆ ଏହି ଶ୍ରେଣୀର ହୋଇଥା'ନ୍ତି । ଏଥିରେ ମୁଖ୍ୟତଃ କାଗଜ, କାର୍ଡବୋର୍ଡ, ପ୍ଲାଷ୍ଟିକ, ଧୂଳି, ପତ୍ର ଏବଂ ପନିପରିବା ଓ ଖାଦ୍ୟର ଅବଶିଷ୍ଟାଂଶ ରହିଥାଏ । ଆଜିକାଲି ବହୁ ପରିମାଣରେ ବିଭିନ୍ନ ପ୍ରକାରର ଗୁଟ୍‌କାର ଛୋଟ ଛୋଟ ପ୍ୟାକେଟ ଖୋଳ ଓ ପଲିଥିନ ମୁଣି ଏହି ଅଳିଆରେ ମିଳୁଛି ।

ଞ. **ମୃତପ୍ରାଣୀ:** ସ୍ୱାଭାବିକ ବା ଦୁର୍ଘଟଣାରେ ମରିଥିବା ପଶୁ ସବୁକୁ ଏହି ଶ୍ରେଣୀର କଠିନ ଅଳିଆ ଭାବରେ ଭାଗ କରାଯାଇଛି । କିନ୍ତୁ କଂସେଇଖାନାରୁ ବାହାରୁ ଥିବା କୌଣସି ମଲା ପଶୁର ଅଂଶ ଏହି ଶ୍ରେଣୀ ଅନ୍ତର୍ଭୁକ୍ତ ନୁହେଁ । ଏସବୁ ହେଉଛି ଗୋଟିଏ ପ୍ରକାରର ଶିଳ୍ପଜ ଅଳିଆ ।

ସ୍ଥାନାନ୍ତରଣ ବ୍ୟବସ୍ଥା ଅନୁସାରେ ମୃତ ପ୍ରାଣୀଙ୍କୁ ଦୁଇ ଭାଗ କରାଯାଇଥାଏ । ସେଗୁଡ଼ିକ ହେଲା ବଡ଼ ମୃତ ପ୍ରାଣୀ ଓ ଛୋଟ ମୃତ ପ୍ରାଣୀ । ଘୋଡ଼ା, ଗୋରୁଗାଈ, ମେଣ୍ଢା, ଛେଳି ଆଦି ବଡ଼ ଶ୍ରେଣୀର ଓ କୁକୁର, ବିଲେଇ, ମୂଷା, ଠେକୁଆ ଆଦି ଛୋଟ ଶ୍ରେଣୀର ମୃତପ୍ରାଣୀ ପ୍ରକାରର କଠିନ ଅଳିଆ ।

ଏଗୁଡ଼ିକୁ ଶୀଘ୍ର ନହଟାଇଲେ ଏହା ପଡ଼ିଥିବା ଜାଗାରେ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହୋଇଥାଏ । ତେଣୁ ଏଗୁଡ଼ିକୁ ଜନବସତି ଓ ଗମନାଗମନ ଅଞ୍ଚଳରୁ ଅଳ୍ପ ସମୟ ଭିତରେ ଦୂରେଇଦେବା ଉଚିତ ।

ଟ. **ନିର୍ମାଣ ଓ ଭଙ୍ଗା ଅଳିଆ:** ଘର, ବ୍ୟାବସାୟିକ କୋଠା ତଥା ଅନ୍ୟାନ୍ୟ ନିର୍ମାଣ ଓ ଭଙ୍ଗାଭଙ୍ଗି କାମରୁ ମାଟି, ପଥର, କଙ୍କ୍ରିଟ୍, ଇଟା, ପାଇପ୍, ବିଦ୍ୟୁତ ସରଞ୍ଜାମ ଆଦି ବାହାରିଥାଏ । ବଡ଼ ବଡ଼ କୋଠାର ମରାମତି ବା ପୁନର୍ନିର୍ମାଣ କାମରୁ ବହୁ ପରିମାଣରେ ଏଗୁଡ଼ିକ ବାହାରିଥାଏ ।

ଠ. **ଶିଳ୍ପଜ ଅଳିଆ:** ବିଭିନ୍ନ କଳକାରଖାନାରେ ଅନେକ ପ୍ରକାରର କଞ୍ଚାମାଲ କାମରେ ଲାଗେ । ସେଥିରେ ଥିବା ମଳ ଓ ବ୍ୟବହାର ଅନୁପଯୋଗୀ ଅଂଶ ଅଳିଆ ରୂପେ ବାହାରିଥାଏ । ଏସବୁର ପରିମାଣ ଓ ପ୍ରକାର ପ୍ରତ୍ୟେକ କଳକାରଖାନା ପାଇଁ ଅଲଗା ଅଲଗା ହୋଇଥାଏ । ଏଭଳି ଅଳିଆରେ ଉଭୟ ଜୈବ ଓ ଅଜୈବ ମଳ ରହିଥାଏ ।

ଡ. **ବିପଦଜନକ ଅଳିଆ:** ଏହି ଅଳିଆ ବିଭିନ୍ନ କଳକାରଖାନା, ପ୍ରତିଷ୍ଠାନ ବା ସାଧାରଣ ଘରୁ ବାହାରି ପାରେ । ଏହି ଅଳିଆର ଭୌତିକ, ରାସାୟନିକ ବା ଜୈବିକ ଗୁଣ ମଣିଷ ଓ ପରିବେଶ ପାଇଁ ବିପଦଜନକ ହୋଇଥାଏ । କେତେ କ୍ଷେତ୍ରରେ ବିପଦଜନକ ଅଳିଆ ସାଧାରଣ ତାପମାତ୍ରାରେ ତରଳ ବା ବାଷ୍ପୀୟ ହୋଇଥାଏ । କିନ୍ତୁ କଠିନ ପାତ୍ରରେ ରଖି ବା କଠିନ ବସ୍ତୁରେ ଭିଜାଇ ଫୋପଡ଼ା ଯାଉଥିବାରୁ ଏଗୁଡ଼ିକୁ କଠିନ ଅଳିଆ ଶ୍ରେଣୀରେ ରଖାଯାଇଛି । ବିଭିନ୍ନ ପ୍ରକାରର ରାସାୟନିକ ତରଳ, ରଙ୍ଗ, କୀଟନାଶକ, ବିସ୍ଫୋରକ ଦ୍ରବ୍ୟ, ଡାକ୍ତରଖାନାର ଅଳିଆ ଆଦି ଏହି ପ୍ରକାରର ଅଳିଆ ।

ଙ. **ନର୍ଦ୍ଦମା ଅଳିଆ:** ନର୍ଦ୍ଦମାର ସଫେଇ କାମରୁ ବାହାରୁ ଥିବା କଠିନ ଅଳିଆ ଏହି ନାଁରେ ଜଣା । ଏଥିରେ ଥିବା ବାଲିକଣା ଓ ପଥର ଭଳି ଅଜୈବ ଅଂଶ ଅଲଗା ହୋଇଯାଇଥାଏ । କିନ୍ତୁ ବାକି କାଦୁଅ ଅଂଶରେ ସଢ଼ା ଜୈବିକ ଅଂଶ ଥାଏ ଏବଂ ଏଥିରେ ରୋଗ ଜୀବାଣୁ ମଧ୍ୟ ରହିଥା'ନ୍ତି । ତେଣୁ ଏଗୁଡ଼ିକୁ ଯଥାଶୀଘ୍ର ସଠିକ ଭାବରେ ନଷ୍ଟ କରିବା ବ୍ୟବସ୍ଥା କରିବା ଜରୁରୀ ।

ମୋଟାମୋଟି ଭାବରେ ଦେଖିଲେ ଆମେ ପରିବେଶରୁ ଶକ୍ତି ଓ କଞ୍ଚାମାଲ ପାଇଥାଏ ଏବଂ କଠିନ ଅଳିଆ ପରିବେଶକୁ ଛାଡ଼ିଥାଏ । ତେଣୁ ଲମ୍ବା ସମୟ ପାଇଁ ଚିନ୍ତା କଲେ ଏହି ପାଇବା ଓ ଦେବା ସମ୍ପର୍କର ସନ୍ତୁଳନର ଅଭାବ ହିଁ ପରିବେଶକୁ ପ୍ରଭାବିତ କରୁଛି ।

### *କଠିନ ଅଳିଆର ପ୍ରଭାବ*

କଠିନ ଅଳିଆ ମାଟି ଉପରେ ଜମାଇ ରଖିଲେ ପରିବେଶ ଉପରେ କେତେଗୁଡ଼ିଏ କୁପ୍ରଭାବ ପଡ଼ାଏ ।

କ. ଅଳିଆ ଗଦାରୁ ବାହାରୁଥିବା ତରଳ ପଦାର୍ଥ ମାଟି ଉପରର ତଥା ମାଟି ତଳର ପାଣିକୁ ପ୍ରଦୂଷିତ କରେ ।

ଖ. ଅଳିଆ ଗଦା ଥିବା ଅଞ୍ଚଳରେ ଗନ୍ଧ ହୁଏ । କୀଟ, ମୂଷା ଆଦି ଜୀବ ଏଭଳି ସ୍ଥାନରେ ଆରାମରେ ରହନ୍ତି । ପବନରେ ମଧ୍ୟ ଉଡ଼ି ଅଳିଆ ଏଣେତେଣେ ପଡ଼େ ।

ଗ. ଅଳିଆ ଗଦାର ଆଖପାଖ ଅଞ୍ଚଳର ମାଟି ଅମ୍ଳୀୟ ହୋଇଯାଏ ।

ଘ. ସଢ଼ୁଥିବା ଅଳିଆରୁ କାଡଘର ବାଷ୍ପ ବାହାରି ବାୟୁମଣ୍ଡଳର ତାପମାତ୍ରା ବଢ଼ାଏ ।

ଙ. ଅଳିଆ ଗଦାରେ ନିଆଁ ଲାଗିଗଲେ ତାହା ବହୁତ ବଡ଼ ସମସ୍ୟା ସୃଷ୍ଟି କରେ ।

ଚ. ଖାଦ୍ୟ ପାଇଁ ଅଳିଆ ଗଦା ଘାଣ୍ଟୁଥିବା ବାରବୁଲା ପଶୁଙ୍କ ଯୋଗୁ ମହାମାରୀ ବ୍ୟାପୀ ଥାଏ ।

ଛ. ବିମାନଘାଟି ପାଖରେ ଥିବା ଅଳିଆ ଗଦା ଆଉ ଗୋଟିଏ ପ୍ରକାରର ବିପଦ ସୃଷ୍ଟି କରେ । ଖାଦ୍ୟ ପାଇଁ ସେଠାରେ ଉଡ଼ୁଥିବା ପକ୍ଷୀମାନଙ୍କ ଯୋଗୁ ବେଳେବେଳେ ବିମାନ ଦୁର୍ଘଟଣା ହୋଇଥାଏ ।

### *ଏଥିପାଇଁ ଉପାୟ*

କଠିନ ଅଳିଆ କମାଇବାର ଚାରିଟି ବାଟ ରହିଛି । ପ୍ରଥମେ ଅଳିଆ ସୃଷ୍ଟି ନକରିବା, ଦ୍ୱିତୀୟରେ ଆବଶ୍ୟକତା କମାଇବା, ତୃତୀୟରେ ପୁଣି ଥରେ ବ୍ୟବହାର କରିବା, ଚତୁର୍ଥରେ ଯେଉଁଠି ସମ୍ଭବ ସେସବୁ ଜିନିଷର ପୁନର୍ଚକ୍ରଣ କରିବା । ଏହି ଚାରିଟି ବାଟ ଯଦି ସମସ୍ତେ ମାନନ୍ତି ତେବେ କଠିନ ଅଳିଆ ସୃଷ୍ଟି ହେବାର ପରିମାଣ କେତେ କମିଯାଆନ୍ତା ଓ ସମସ୍ୟା ମଧ୍ୟ କମିଯାଆନ୍ତା । ଏଥିପାଇଁ ସମସ୍ତଙ୍କର ସହଯୋଗ ଲୋଡ଼ା ।

# ଅଳିଆ ଚିହ୍ନିବା

ଆମ ଚାରିପାଖରେ ଅନେକ ଜିନିଷ ରହିଛି । ଯିବା ଆସିବା ବେଳେ ସେସବୁକୁ ଆମେ ଦେଖୁ । ସେଥିରୁ କିଛି ଆମକୁ ଭଲ ଲାଗେ, ଆଉ କିଛି ଭଲଲାଗେ ନାହିଁ । ସେସବୁର ତାଲିକା କଲେ ଆମେ ନିଜର ପସନ୍ଦ ଅପସନ୍ଦ କଥା ଜାଣିପାରିବା । ଅନେକ ଲୋକଙ୍କ ତାଲିକା ମିଳାଇଲେ ଆଖପାଖର ଅପସନ୍ଦ ଜିନିଷଗୁଡ଼ିକୁ ଚିହ୍ନଟ କରିପାରିବା ଏବଂ ସେସବୁକୁ ହଟାଇ ପରିବେଶକୁ ସୁନ୍ଦର କରିପାରିବା ।




*କ'ଣ ଦରକାର*

ଶ୍ରେଣୀ ଭିତରେ କଳାପଟା, ଚକ୍

*କିପରି କରିବ*

କଳାପଟାରେ ମଝିରେ ଗୋଟିଏ ଗାର ପକାଇ ଦୁଇଭାଗ କର । ଗୋଟିଏ ପଟର ଉପରେ ଲେଖ ଭଲଲାଗେ ଓ ଆରଟିରୁ ଉପରେ ଲେଖ ଭଲଲାଗେ ନାହିଁ । ଏବେ ପିଲାଙ୍କୁ ପଚାର ଘରୁ ସ୍କୁଲ ଆସୁଥିବା ବାଟରେ ଥିବା ବିଭିନ୍ନ ଜିନିଷ ଭିତରୁ କେଉଁ ପାଞ୍ଚଟି ଜିନିଷ ତାଙ୍କୁ ଭଲଲାଗେ ଓ କେଉଁ ପାଞ୍ଚଟି ଜିନିଷ ଭଲଲାଗେ ନାହିଁ । ଶ୍ରେଣୀରେ ବହୁତ ପିଲା ଥିଲେ ୫-୬ ଜଣିଆ ଦଳ କରି ପଚରାଯାଇ ପାରିବ ।

ଭଲଲାଗେ ନାହିଁ ତାଲିକାରୁ ସବୁଠାରୁ ଅଧିକ କେଉଁ ଜିନିଷ ଆସିଛି ? ସମସ୍ତଙ୍କ ଭଲଲାଗେ ନାହିଁ ତାଲିକାରେ ଅଳିଆ ଗଦା ରହିଛି କି ?

*ତାଲିକା*

| ଭଲଲାଗେ | | ଭଲଲାଗେ ନାହିଁ | |
|---|---|---|---|
| ଫୁଲବଗିଚା | ଚଢ଼େଇ | ନର୍ଦ୍ଦମା | ଅଳିଆ ଗଦା |
| ସଫା ଦୋକାନ | ଘର | ଅଇଁଠା ଖଲି | ମଲା ଜୀବ |

# ଅଳିଆର ଚିତ୍ର

ଅଳିଆ କହିଲେ କାହା ମନରେ କି ପ୍ରକାର ଚିତ୍ର ଆସୁଛି। କିଏ ବଡ଼ ବଡ଼ କାରଖାନାର ଅଳିଆକୁ ହିଁ ଅଳିଆ ଭାବୁଛି ତ କିଏ ପରେ ବାହାରୁଥିବା ଅଳିଆ ଭାବୁଛି। ତେଣୁ ଅଳିଆ କହିଲେ କାହା ମନରେ କି ପ୍ରକାର ଭାବନା ଆସୁଛି ଦେଖିବା।

### କ'ଣ ଦରକାର

କାଗଜ, ପେନ୍‌ସିଲ୍ ବା କଲମ

### କିପରି କରିବ

ଶ୍ରେଣୀରେ ପିଲାମାନଙ୍କୁ ଅଳିଆ ଗଦାର ଚିତ୍ର କରିବାକୁ କୁହ। ଗଦାରେ କି ପ୍ରକାରର ଜିନିଷ ରହିଛି ସେସବୁର ତାଲିକା କରି ଚିତ୍ର କରିବେ। ତାଙ୍କ ମନକୁ ଯାହା ଆସିବ ସେମାନେ ଚିତ୍ର କରିବେ।



# ଅଳିଆର ତାଲିକା ତିଆରି

ଗୋଟିଏ ଅଳିଆ ଗଦାରେ ଅନେକ ପ୍ରକାରର ଜିନିଷ ରହିଥାଏ। ପିଲାମାନେ ଏଗୁଡ଼ିକର ଗୋଟିଏ ତାଲିକା କରିବେ। ସେଗୁଡ଼ିକୁ ପୁଣି ଚିକିତ୍ସା ଅଳିଆ, ବିଷାକ୍ତ ଅଳିଆ, ଓଦା ଅଳିଆ, ଶୁଖିଲା ଅଳିଆ ଆଦି ବିଭିନ୍ନ ଭାଗ କରିବେ।

*କ'ଣ ଦରକାର*

ଅଳିଆ ଗଦା, କାଗଜ, କଲମ

*କିପରି କରିବ*

ଗୋଟିଏ ଅଳିଆ ଗଦା ପାଖକୁ ପିଲାଙ୍କୁ ନେଇଯିବ। ସେଠାରେ ସେମାନେ ବାହାରୁ ଦେଖାଯାଉଥିବା ଅଳିଆର ଗୋଟିଏ ତାଲିକା ଆଗ କରିବେ। ଏଥିରେ ମୁଖ୍ୟତଃ ପରିବା ଚୋପା, ରୋଷେଇଘର ଅଳିଆ, କାଗଜ, ଚକୋଲେଟ ଜରି, ଭଙ୍ଗା କାଚ, ପ୍ଲାଷ୍ଟିକ ବୋତଲ, ଛିଣ୍ଡା ଅଖା, ପଲିଥିନ୍ ମୁଣି, ଭଙ୍ଗା ବୋତଲ ବା ଡବା ଖୋଳ, ବ୍ୟାଣ୍ଡେଜ୍ କନା, ଖାଲି ଫିନାଇଲ ବୋତଲ, କୀଟନାଶକ ବୋତଲ, ବ୍ୟାଟେରୀ, ରବର, ସିରିଞ୍ଜ୍ ଓ ଛୁଞ୍ଚି, ଭଙ୍ଗା ବଲ୍‌ବ୍, ରଙ୍ଗ ଡବା ଆଦି ଥାଏ।

ତାଲିକାରେ ଥିବା ଅଳିଆକୁ ସେମାନେ ଚାରି ମୁଖ୍ୟ ପ୍ରକାରରେ ବାଣ୍ଟିବେ।

ପ୍ରଥମ: ଚିକିତ୍ସା ଅଳିଆ - ବ୍ୟାଣ୍ଡେଜ୍ କନା, ସିରିଞ୍ଜ୍ ଓ ଛୁଞ୍ଚି ଆଦି।

ଦ୍ୱିତୀୟ: ବିଷାକ୍ତ ଅଳିଆ - ବ୍ୟାଟେରୀ, ଭଙ୍ଗା ଟ୍ୟୁବ୍ ଲାଇଟ୍, ରଙ୍ଗ ଡବା, କୀଟନାଶକ ଓ ରାସାୟନିକ ବୋତଲ...

ତୃତୀୟ: ଓଦା ଅଳିଆ - ପରିବା ଚୋପା, ରୋଷେଇ ଅଳିଆ, ବଗିଚାରୁ ବାହାରିଥିବା ଘାସ, ଶୁଖିଲା ପତ୍ର, ସଢ଼ା ଫଳ ବା ପରିବା ଆଦି ଏହି ଶ୍ରେଣୀର ଅଳିଆ।

ଚତୁର୍ଥ: ଶୁଖିଲା ଅଳିଆ - କାଗଜ, ପ୍ଲାଷ୍ଟିକ ଖୋଳ, ଭଙ୍ଗା କାଚ, ଟିଣ, ଧାତୁ ଆଦି।



# ଅଳିଆ ଗଦାର ଅବସ୍ଥିତି

ଅଳିଆ ଗଦା ସ୍କୁଲ, ଘର, ବଜାର, ଡାକ୍ତରଖାନାଠାରୁ କେତେ ଦୂରରେ ବା କେତେ ପାଖରେ ରହିଛି। ଅତି ଦୂରରେ ଥିଲେ ଅଳିଆ ପକାଇବା ପାଇଁ ଲୋକମାନେ ଆସିବେ ନାହିଁ। ଅତି ପାଖରେ ଥିଲେ ତାହା ନିୟମିତ ସଫା ହେଉନଥିଲେ ରୋଗ ହେବାର ସମ୍ଭାବନା ରହିଛି।

### କ'ଣ ଦରକାର

କାଗଜ, ପେନ୍‌ସିଲ୍, ସ୍କେଲ

### କିପରି କରିବ

ଗୋଟିଏ କାଗଜରେ ସ୍କୁଲ ଓ ଘରର ମାନଚିତ୍ର ଆଙ୍କ। ସେଥିରେ ଘର, ଦୋକାନ, ବଜାର, ସ୍କୁଲ, ଅଳିଆ ଗଦା ଆଦି ଚିହ୍ନଟ କର। ଘରଠାରୁ ବା ସ୍କୁଲଠାରୁ ଅଳିଆ ଗଦା କେତେ ଦୂରରେ ରହିଛି ତାହା ଲକ୍ଷ୍ୟ କର। ସେସବୁ ଠିକ୍ ଜାଗାରେ ରହିଛି କି ନାହିଁ ସେ କଥା ଆଲୋଚନା କର।



# ଅଳିଆ ପକାଏ କିଏ

ଅଳିଆ ଗଦାରେ ଅଳିଆ ପକାଇବା ପାଇଁ କିଏ ସବୁ ଆସନ୍ତି। ସେମାନେ ଅଳିଆ ଠିକ୍‌ରେ ପକାନ୍ତି କି ନାହିଁ? ଅଳିଆ ଡବାରେ ନପଡ଼ି ବାହାରେ ପଡ଼ିଲେ କ'ଣ ହେବ?

*କ'ଣ ଦରକାର*

ଅଳିଆ ଗଦା, କାଗଜ, କଲମ

*କିପରି କରିବ*

ଶ୍ରେଣୀରେ ସମସ୍ତେ ମିଶି ଗୋଟିଏ ପ୍ରଶ୍ନାବଳୀ ତିଆରି କର । ସେଥିରେ କିଛି ପ୍ରଶ୍ନ ରଖ । କିଛିଦିନ ଧରି ଗୋଟିଏ ଅଳିଆ ଗଦାକୁ ବାରଘଣ୍ଟା ପାଇଁ ଲକ୍ଷ୍ୟ କର । ଗୋଟିଏ ଦିନରେ ନକରି ଅଲଗା ଅଲଗା ସମୟରେ ଦିନକୁ ଘଣ୍ଟାଏ ଲେଖାଏଁ ବାରଦିନ ଧରି ଲକ୍ଷ୍ୟ କର । ଏହି ଅଳିଆ ଗଦାରେ କିଏ ଅଳିଆ ପକାଉଛି, କେତେ ଅଳିଆ ପକାଉଛି, କିପ୍ରକାର ଅଳିଆ, ଅଳିଆ ଗଦାରେ ରଖାଯାଇଥିବା ଡବା ଭିତରେ ପକାଉଛି ନା ତା' ପାଖରେ ଢାଳି ଦେଉଛି, ଡବାଟି ଖାଲି କରାଯାଉଛି କି ନା ନାହିଁ, କେତେ ଦିନରେ ଖାଲି ହେଉଛି ଆଦି ଦେଖ । ଏସବୁ ତଥ୍ୟକୁ ମିଶାଇ ଗୋଟିଏ ସାରଣୀ ତିଆରି କର ।



*ନମୁନା ପ୍ରଶ୍ନାବଳୀ*

୧. ପିଲାର ନାଁ ୨. ଶ୍ରେଣୀ ୩. କେଉଁ ସମୟରେ ଲକ୍ଷ୍ୟ କରୁଛି

୪. କେଉଁଠାରୁ ଅଳିଆ ଆସୁଛି - ଘର/ଦୋକାନ/ହୋଟେଲ/ଡାକ୍ତରଖାନା/ଅନ୍ୟାନ୍ୟ

୫. କିଏ ଅଳିଆ ପକାଉଛି - ଘରର ମୁରବି/ଘରର କେହି ଛୋଟ ପିଲା/ଘରେ କାମ କରୁଥିବା ଲୋକ/

୬. କେଉଁ ପ୍ରକାରର ଅଳିଆ ପକାଉଛି

୭. କେଉଁଠି ପକାଉଛି - ଡବା ଭିତରେ/ଡବା ବାହାରେ

୮. ଅନ୍ୟାନ୍ୟ

ସବୁ ପିଲା ଏଭଳି ତଥ୍ୟ ସଂଗ୍ରହ କରିବା ପରେ ତାକୁ ଏକାଠି କରି ଶିକ୍ଷକ ଆଲୋଚନା କରିବେ ଯେ ଅଳିଆ ଡବା ଥିଲେ ବି କାହିଁକି ରାସ୍ତାଘାଟ, ବଜାର, ଡାକ୍ତରଖାନା ଆଦି ଅଞ୍ଚଳ ମଇଳା ହୁଏ ।

# ପ୍ରକୃତିଠାରୁ ଶିଖିବା

*ଲୋଭ କମ୍ ମଇଳା କମ୍*

ପ୍ରକୃତିରେ ମଣିଷକୁ ଛାଡ଼ି ଅନେକ ଜୀବଜନ୍ତୁ ଅଛନ୍ତି । ସେମାନେ ତାଙ୍କ ଦରକାର ମୁତାବକ ହିଁ ଖାଦ୍ୟ ସଂଗ୍ରହ କରନ୍ତି । ଅଧିକ ଜନ୍ତୁ ଶିକାର କରନ୍ତି ନାହିଁ ବା ଅଳିଆ ଗଦାଇ ରଖନ୍ତି ନାହିଁ । ଭୋକ ଲାଗିଲେ ହିଁ ଶିକାର କରନ୍ତି । ଭୋକ ନଥିବା ବେଳେ ଅଯଥା ଶିକାର କରି ନଷ୍ଟ କରନ୍ତି ନାହିଁ । ସିଂହୀ ତା'ର ପୂରା ଦଳ ପାଇଁ ଶିକାର କରେ । ଶିକାର ପରେ ସମସ୍ତେ ପେଟ ପୂରା ଖାଆନ୍ତି । ଖାଇବା ପରେ ବଳକା ଖାଦ୍ୟ ତାଙ୍କର ନଷ୍ଟ ହୁଏ ନାହିଁ । ଗଧିଆ ଭଳି କିଛି ଜୀବ ସିଂହର ପରିବାର ଛାଡ଼ି ଯାଇଥିବା ଖାଦ୍ୟକୁ ଖାଆନ୍ତି । ଏମାନଙ୍କୁ ଅପମାର୍ଜକ ବା ସ୍କାଭେଞ୍ଜର୍ କୁହାଯାଏ । ଏମାନେ ଶିକାରର କେବଳ ଦାନ୍ତ ଓ ଶିଙ୍ଘକୁ ଛାଡ଼ି ବାକି ସବୁ ଖାଇ ସଫା କରିଦିଅନ୍ତି । ସେହିଭଳି ଆଉ ଗୋଟିଏ ଅପମାର୍ଜକ ହେଉଛି ଶାଗୁଣା । ବିଭିନ୍ନ ଜାତିର ଶାଗୁଣା ଶିକାରର ଟାଣ ଚମଡ଼ାଠାରୁ ଆରମ୍ଭ କରି ଦେହ ଭିତରର ନରମ ଅଂଶ ସବୁକୁ ଖାଇ ଦିଅନ୍ତି । ଏପରିକି ହାଡ଼ ଭିତରର ଶସକୁ ମଧ୍ୟ ଖାଇ ସଫା କରିଦିଅନ୍ତି । ଏହି ବଡ଼ ଜୀବମାନେ ଖାଇବା ପରେ ଯାହା କିଛି ପଡ଼ିରହେ ତାକୁ ମାଛି, ପୋକ ଖାଆନ୍ତି ଓ ଶେଷରେ ବୀଜାଣୁ ଦ୍ୱାରା ଅପଘଟନ ହୋଇ ସେଥିରୁ ଅମ୍ଳଜାନ, ଅଙ୍ଗାର, ଯବକ୍ଷାରଯାନ ଆଦି ବାହାରି ପବନ ଓ ମାଟିରେ ମିଶେ ଏବଂ ଉଦ୍ଭିଦର କାମରେ ଲାଗେ । ଏହି ପୂରା ପ୍ରକ୍ରିୟା କେତେ ବର୍ଷ ଲାଗିପାରେ । କିନ୍ତୁ ଏହି ଅପମାର୍ଜକମାନେ ନଥିଲେ ସୃଷ୍ଟିର ଆରମ୍ଭରୁ ଯେତେ ଜୀବ ମଲେଣି ସେସବୁ ସେହିଭଳି ଜମି ରହୁଥା'ନ୍ତା ଓ ଆମେ ଠିଆ ହେବା ପାଇଁ ମଧ୍ୟ ପୃଥିବୀରେ ଜାଗା ନଥା'ନ୍ତା ।

# ଅଳିଆର ପରିମାଣ

ଗୋଟିଏ ସାଧାରଣ ଘରୁ କେତେ ଅଳିଆ ବାହାରେ ? ସେସବୁ ଭିତରୁ କିଛି ଆମେ କମାଇ ପାରିବା କି ? କିଛି ଜିନିଷକୁ ପୁଣି ଥରେ ବ୍ୟବହାର କରିପାରିବା କି ? ସେଥିପାଇଁ ଆଗ କେତେ ଅଳିଆ ବାହାରୁଛି ତାକୁ ଦେଖିବା ଦରକାର ।

*କ'ଣ ଦରକାର*

କାଗଜ, କଲମ

*କିପରି କରିବ*

ଗୋଟିଏ ଦିନ ସକାଳୁ ଉଠିବା ପରଠାରୁ ଘରର କୌଣସି ଅଳିଆ ନଫିଙ୍ଗି ସବୁ ସାଙ୍ଗରେ ନେଇ ସ୍କୁଲକୁ ଯାଅ । ଏଥିରେ ଛିଣ୍ଡା କାଗଜ, ପରିବା ଚୋପା, ଚା ଗୁଣ୍ଡ, ଫଳ ଚୋପା, ବଳକା ଖାଦ୍ୟ, ପ୍ଲାଷ୍ଟିକ, ଡରି, ପଲିଥିନ୍ ମୁଣି, ଠୁଙ୍ଗା ଆଦି ରହିଥିବ ।

ଏସବୁକୁ ଗୋଟିଏ ବଡ଼ ଜରିମୁଣିରେ ପୂରାଇଦିଅ । ଗୋଟିଏ ବଡ଼ କମାଣି ନିକିତି (ଯାହା ଅତି କମ୍‌ରେ ୧୦ କିଲୋଗ୍ରାମ୍ ଓଜନ କରିପାରିବ) ନେଇ ତାକୁ ଟାଙ୍ଗିଦିଅ ଓ ତା'ର ତଳେ ଥିବା କଣ୍ଟାରେ ଏହି ଜରିଟିକୁ ଝୁଲାଇ ଦିଅ । ଏଥିରୁ ଜଣାପଡ଼ିବ ଜଣେ ପିଲା ଘରୁ ଗୋଟିଏ ଦିନରେ କେତେ ଅଳିଆ ବାହାରୁଛି । ଏଥିରୁ ହିସାବ କରିପାରିବ ଗୋଟିଏ ପରିବାରରୁ ବର୍ଷକୁ କେତେ ଅଳିଆ ବାହାରୁଛି ।

ସାଙ୍ଗମାନଙ୍କର ଘରୁ ବାହାରୁଥିବା ଅଳିଆ ସବୁର ଓଜନ ନେଇ ତୁଳନା କର ।



# ଫିଙ୍ଗି ଦେଉଥିବା ଅଳିଆ

କିଛି ଜିନିଷ ଆମେ ଥରେ ବ୍ୟବହାର କରି ଫିଙ୍ଗି ଦେଉଥାଉ । କିନ୍ତୁ ସେସବୁ ଜିନିଷର କିଛି ବିକଳ୍ପ ଅଛି କି ଯାହା ଅନେକ ଥର ବ୍ୟବହାର କରିହେବ ।

*କ'ଣ ଦରକାର*

କାଗଜ, କଲମ

*କିପରି କରିବ*

ଘରେ, ସ୍କୁଲରେ ବା ଭୋଜି ଆଦିରେ ଥରେ ବ୍ୟବହାର ହୋଇ ଫିଙ୍ଗା ଯାଉଥିବା ଜିନିଷର ଗୋଟିଏ ତାଲିକା କର । ଏହା ବଦଳରେ ଆଉ କି ପ୍ରକାର ଜିନିଷ ବ୍ୟବହାର କରାଯାଇ ପାରିବ ତା'ର ମଧ୍ୟ ତାଲିକା କରିବ ।



| *ଫିଙ୍ଗା ଯାଉଥିବା ଜିନିଷ* | *ବାରମ୍ବାର ବ୍ୟବହାର ହୋଇପାରିବା ଜିନିଷ* |
|---|---|
| ପ୍ଲାଷ୍ଟିକ ଗିଲାସ | କାଚ ବା ଷ୍ଟିଲ ଗିଲାସ |
| ପ୍ଲାଷ୍ଟିକ ବା କାଗଜ କପ୍ | କାଚ ବା ଷ୍ଟିଲ ବାଟି |
| ପ୍ଲାଷ୍ଟିକ ଚାମଚ | ଷ୍ଟିଲ ଚାମଚ |
| ରିଫିଲ ନଥିବା କଲମ | ରିଫିଲ ଲାଗିପାରୁଥିବା କଲମ |
| କାଗଜ ପ୍ଲେଟ | ଷ୍ଟିଲ ବା ଟାଣ ପ୍ଲାଷ୍ଟିକ ପ୍ଲେଟ |

ତାଲିକା କରିବା ପରେ କେଉଁ ପ୍ରକାରର ଜିନିଷ ବ୍ୟବହାର କଲେ କମ୍ ଫିଙ୍ଗିବାକୁ ହେବ ତାହା ଦେଖ । ଫିଙ୍ଗା ଯାଉଥିବା ଜିନିଷ କାହିଁକି ବ୍ୟବହାର କରୁଛ ତାହା ଆଲୋଚନା କର । ତା' ବଦଳରେ ବାରମ୍ବାର ବ୍ୟବହାର ହୋଇପାରିବା ଜିନିଷ କାହିଁକି ବ୍ୟବହାର ହେଉନାହିଁ ? ଏଥିରେ ସୁବିଧା ବା ଅସୁବିଧା କ'ଣ ?

# ସମ୍ପଦ ବଣ୍ଟା

ଆମେ ଯେଉଁ ସବୁ ଜିନିଷ ବ୍ୟବହାର କରେ ସେ ସବୁ କିଛି କିଛି ପ୍ରାକୃତିକ ଜିନିଷରୁ ହିଁ ତିଆରି ହୋଇଥାଏ। ଆମର ପ୍ରାକୃତିକ ସମ୍ପଦ ସୀମିତ। ଏଥିରୁ ଅନେକ ଏବେ ସରିବା ଅବସ୍ଥାକୁ ଆସିଲାଣି। ଆମର ଲୋକସଂଖ୍ୟା ବଢ଼ିବାରୁ ଯେତିକି ବି ସମ୍ପଦ ରହିଛି ତାହା ଅନେକ ଲୋକଙ୍କ ଭିତରେ ବାଣ୍ଟି ହୋଇଯାଉଛି ଓ ଅନେକ ଲୋକ ବ୍ୟବହାର କରିବା ଯୋଗୁ ମଇଳାର ପରିମାଣ ମଧ୍ୟ ବଢୁଛି।

### କ'ଣ ଦରକାର

କାଗଜ, ପିଲା, ଚକ୍

### କିପରି କରିବ




ଶ୍ରେଣୀ ଭିତରେ ଚକ୍‌ରେ ୨ ମିଟରରେ ୨ ମିଟର ଗୋଟିଏ ବର୍ଗ କାଟ। ଥରକେ ପ୍ରାୟ ୧୫ ଜଣ ପିଲା ଏହି ଖେଳଟି ଖେଳିପାରିବେ। ୨୦ x ୨୫ ସେ.ମି. ଆକାରର ପାଞ୍ଚଟି କାଗଜ ନେଇ ସେଥିରେ ଖାଦ୍ୟ, ବସ୍ତ୍ର, ଘର, ପାଣି ଓ ପବନ ଭଳି ଅତି ଦରକାରୀ ଜିନିଷର ନାଁ ଲେଖ ଓ ସେଗୁଡ଼ିକୁ ବର୍ଗ ଭିତରେ ରଖ। କାଗଜଗୁଡ଼ିକ ଅଲଗା ଅଲଗା ରଙ୍ଗର ହେଲେ ଭଲ।

ପ୍ରଥମେ ଜଣେ ପିଲା ବର୍ଗ ଭିତରକୁ ଯିବ ଓ ଯେକୌଣସି କାଗଜ ଉଠାଇ ତାକୁ ଅଧା କରି ଚିରିବ। ଏବେ ସେ ଜଣେ ସାଙ୍ଗକୁ ବର୍ଗ ଭିତରକୁ ଡାକିବ ଓ କାଗଜରୁ ଅଧା ତାକୁ ଦେବ। ଦୁହେଁ ତାଙ୍କ ଭାଗର କାଗଜ ଧରି ବର୍ଗ ଭିତରେ ହିଁ ରହିବେ। ଏହିପରି ଆଉ ଛ'ଜଣ ପିଲା ବର୍ଗ ଭିତରକୁ ଯିବେ (ମୋଟରେ ୧୦ ହେବେ) ଏବଂ ପାଞ୍ଚଟି ମୂଳ ସମ୍ବଳକୁ ଅଧା ଅଧା କରି ବାଣ୍ଟିନେବେ।

ଏତେ ଦଶଜଣ ଯାକ ପିଲା ଆଉ ଦଶଜଣଙ୍କୁ ଭିତରକୁ ନିମନ୍ତ୍ରଣ କରିବେ ଏବଂ ତାଙ୍କ ସହିତ ନିଜର ସମ୍ବଳ ବାଣ୍ଟିବେ। ଏହି ପାଦ ଶେଷରେ ବର୍ଗ ଭିତରେ ୨୦ ଜଣ ପିଲା ରହିଥିବେ ଓ ପ୍ରତି ପିଲା ପାଖରେ ମୂଳ ସମ୍ବଳର ଚଉଠେ ମାତ୍ର ରହିଥିବ। ଏହି ଅବସ୍ଥାରେ ବର୍ଗ ଭିତରେ ପିଲାମାନେ ବେଶ୍ ଖୁନ୍ଦିହୋଇ ଯାଇଥିବେ। ଯେତେବେଳ ଯାଏଁ ବର୍ଗ ଭିତରେ ଆଉ ପିଲା ରହିପାରିବେ, ସେତେବେଳେ ଯାଏଁ ପିଲାଙ୍କୁ

ତକାଯାଉଥିବ ଏବଂ ଭିତର ପିଲାଙ୍କ ସମ୍ବଳ ବଣ୍ଟା ହେଉଥିବ । ଏହି ତୃତୀୟ ପାଦରେ ଆସିଥିବା ପିଲାଙ୍କ ଭାଗରେ ସମ୍ବଳର ୧/୮ ଅଂଶ ମାତ୍ର ପଡୁଥିବ ।

ଏହାକୁ ନେଇ ପିଲାଙ୍କ ସହ ଆଲୋଚନା କରିହେବ ଯେ ଲୋକସଂଖ୍ୟା ବଢ଼ିବାରୁ ସମ୍ପଦ କମିଗଲା (କାଗଜର ଆକାର ଛୋଟ ହୋଇଗଲା) । ଅନ୍ୟ ସମ୍ବଳ ଥିଲେ ମଧ୍ୟ ଜାଗାର ଅଭାବ ମଣିଷଙ୍କ ଉପରେ ପ୍ରଥମ ଚାପ ପକାଇବ । ସମ୍ବଳର ଭାଗ କମିବା ସହିତ ଆଉ କି କି ପ୍ରକାରର ସମସ୍ୟା ଆସିବ ତାହା ବିଷୟରେ ମଧ୍ୟ ଆଲୋଚନା କରାଯାଇ ପାରିବ ।



### ସମ୍ପଦ ନଷ୍ଟ

ଆମ ନିତିଦିନିଆ ଜୀବନରେ ଅନେକ ଅଳିଆ ସୃଷ୍ଟି ହୁଏ । ପ୍ରତିଦିନ ଆମେ ଅନେକ ଜିନିଷ ବ୍ୟବହାର କରେ । କିଛିଦିନ ପରେ ସେଗୁଡ଼ିକ ଆଉ ଆମ କାମରେ ଲାଗେନାହିଁ । ଆମେ ସେଗୁଡ଼ିକୁ ଫିଙ୍ଗିଦିଏ ବା ଆମ ପାଇଁ ସେଗୁଡ଼ିକ ଅଳିଆ ହୁଏ । କିନ୍ତୁ ଆମ ଚାରିପାଖର ମଣିଷ ତିଆରି ହେଉ ବା ପ୍ରାକୃତିକ ହେଉ ପ୍ରତି ଜିନିଷ ପୃଥିବୀରୁ ହିଁ ଆସିଛି ।

ପୃଥିବୀର ସମ୍ପଦକୁ ଆମେ ଦୁଇ ଭାଗରେ ଭାଗ କରିପାରିବା – ଅକ୍ଷୟ ଓ କ୍ଷୟଶୀଳ । ଉଦ୍ଭିଦ, ପ୍ରାଣୀ, ପବନ, ପାଣି ଏବଂ ମାଟି ଭଳି ସମ୍ପଦକୁ ଆମେ ଅକ୍ଷୟ କହିପାରିବା । କାରଣ ଏଗୁଡ଼ିକ ଯେଉଁ ମୌଳିକ ଜିନିଷରେ ଗଢ଼ା ସେଗୁଡ଼ିକ ଅଳ୍ପ ସମୟ ଭିତରେ ବେଶ୍ ସହଜରେ ମାଟିରେ ମିଶିପାରେ ଏବଂ ପୁଣି ଥରେ ବ୍ୟବହାର ପାଇଁ ମିଳିପାରେ । କିନ୍ତୁ ଜୀବାଶ୍ମ ଇନ୍ଧନ ବା ଖଣିଜ ସମ୍ପଦ ଆଦି ତିଆରି ହେବା ପାଇଁ କୋଟି କୋଟି ବର୍ଷ ଲାଗିଥାଏ । ଏଗୁଡ଼ିକ ପୁଣି ଥରେ ପାଇବା ସମ୍ଭବ ନୁହେଁ । ଏଗୁଡ଼ିକ ଥରେ ସରିଗଲେ ଆଉ ମିଳିବାର ସମ୍ଭାବନା ନଥାଏ । ତେଣୁ ଏଗୁଡ଼ିକ କ୍ଷୟଶୀଳ ସମ୍ପଦ ଶ୍ରେଣୀରେ ଯାଏ ।

କ୍ଷୟଶୀଳ ହେଉ ବା ଅକ୍ଷୟ ହେଉ ସବୁ ସମ୍ବଳ ପ୍ରକୃତିର ଅମୂଲ୍ୟ ଦାନ । ଏହାକୁ ନଷ୍ଟ ନକରି ଠିକ୍ ଭାବରେ ବ୍ୟବହାର କରି ଶିଖିବାକୁ ହେବ । ଆମେ ଏହାକୁ ନଷ୍ଟ କରିଦେଲେ ଆମ ପର ପିଢ଼ି ପାଇଁ ଆଉ କିଛି ବାକି ରହିବ ନାହିଁ । ତେଣୁ ଏହାକୁ ବଞ୍ଚାଇ ରଖିବା ଆମର ଦାୟିତ୍ୱ ।

# ଅଳିଆ ସଂଗ୍ରହ

ଘରେ ବାହାରୁଥିବା ଅଳିଆ କିପରି ସଂଗ୍ରହ କରାଯାଏ ? ଘରେ ଆମେ ଅଲଗା ପ୍ରକାର ଅଳିଆ ପାଇଁ ଅଲଗା ଡବା ରଖିଛେ କି ? ସେଥିରେ ଥିବା ଅଳିଆକୁ କିପରି ଫିଙ୍ଗିଥାଏ ?



*କ'ଣ ଦରକାର*

କାଗଜ, କଲମ

*କିପରି କରିବ*

ଘରମାନଙ୍କରୁ ଅଳିଆ କିପରି ସଂଗ୍ରହ କରାଯାଏ ସେ ବିଷୟରେ ତଥ୍ୟ ଏକାଠି କର । ଗୋଟିଏ ପ୍ରଶ୍ନାବଳୀ ତିଆରି କର ଓ ନିଜ ଘରୁ ଓ ପାଖର ଆଉ କିଛି ଘରୁ ପଚାରି ସେଥିରେ ଲେଖ ।



*ନମୁନା ପ୍ରଶ୍ନାବଳୀ*

୧. ପିଲାର ନାଁ

୨. ଘର (କେଉଁ ଅଞ୍ଚଳରେ ଘର) ସହର/ଗାଁ/ସହରତଳି/ବସ୍ତି

୩. ଘରେ କେତେ ଜଣ ଲୋକ ଅଛନ୍ତି ?

୪. ଘରେ ଅଳିଆ ପକାଇବା ପାଇଁ ଅଲଗା ଡବା ବା ବାକ୍ସ ଅଛି କି ? କେତୋଟି ଅଛି ?

୫. ଅଲଗା ଅଳିଆ ପାଇଁ ଅଲଗା ବାକ୍ସ ରହିଛି କି ?

୬. ଅଳିଆ ବାକ୍ସ କିପରି ଖାଲି କରାଯାଏ ? ବାହାରେ ନିର୍ଦ୍ଦିଷ୍ଟ ଜାଗାରେ ? ମ୍ୟୁନିସିପାଲିଟିର ଅଳିଆ ଡବାରେ ? ମ୍ୟୁନିସିପାଲିଟିର ଅଳିଆ ଡବା ପାଖରେ ? ରାସ୍ତା କଡ଼ରେ ? ନିଜ ଘର ପାଖରେ ଗାତ ଖୋଳି ? ସବୁ ଅଳିଆ ଏକା ଗାତରେ ?

୭. ଘରର ଅଳିଆ କିଏ ପକାଏ ? ସେ ସବୁ ଅଳିଆ ବାକ୍ସର ଅଳିଆକୁ ଏକାଠି କରି ପକାନ୍ତି କି ? ବିଭିନ୍ନ ପ୍ରକାରର ଅଳିଆ ଅଲଗା ଅଲଗା ଜାଗାରେ ପକାନ୍ତି କି ?

୮. ପୁନର୍ବ୍ୟବହାର ହୋଇପାରିବା ଭଳି ଅଳିଆକୁ ଅଲଗା କରି ରଖନ୍ତି କି ?

୯. ମୁନିସିପାଲିଟିର ଅଳିଆ ଡବା କେତେ ଦିନରେ ଖାଲି କରାଯାଏ ?

୧୦. ତୁମ ଗଳିରେ କେତେ ଘର ଅଛି ?

୧୧. ପ୍ରତି ଘରେ ହାରାହାରି କେତେ ଲୋକ ରହନ୍ତି ?

୧୨. ମୁନିସିପାଲିଟିର ଅଳିଆ ଡବା ଖାଲି ନହେଲେ ତାକୁ ଦେଖିବା ପାଇଁ କିଛି ଅନୁଷ୍ଠାନ ତୁମ ଗଳିରେ ଅଛି କି ?

### ଅଳିଆର ବଛାବଛି

ଆଜିକାଲି ପ୍ରାୟ ସବୁ ଜିନିଷ ପ୍ଲାଷ୍ଟିକ ଡବା, କାଗଜ ପେଟି, ବୋତଲ, ଟିଣ ଆଦି ସୁନ୍ଦର ଖୋଳରେ ବିକ୍ରି ହେଉଛି । ଭାରତରେ ପ୍ରାୟ ୧୦ ଭାଗ ଖୋଳ ପୁଣି ଥରେ ବ୍ୟବହାର କରାଯାଏ । ଆହୁରି ପୁଣି ପୁରୁଣା ଖବର କାଗଜ, ପତ୍ରିକା, ବହି, କ୍ଷୀର ମୁଣି, ବୋତଲ, ଜରିମୁଣି ଆଦି ଅଲଗା କରି ରଖାଯାଏ ଓ କବାଡ଼ିବାଲାଙ୍କୁ ବିକ୍ରି କରାଯାଏ । ବାହାରେ ଫୋପଡ଼ା ଯାଉଥିବା ଅଳିଆରୁ ବି ଅଳିଆଗୋଟାଳି କିଛି ବାଛି ନେଇ ବିକ୍ରି କରନ୍ତି । ଏହା ଫଳରେ କିଛି ସମ୍ପଦ ନଷ୍ଟ ହେବାରୁ ବଞ୍ଚିଯାଏ ଓ ଏଗୁଡ଼ିକ ତିଆରି ହେବାରେ ଯେଉଁ ଶକ୍ତି ଲାଗିଥାଏ ତାହା ମଧ୍ୟ କିଛି ବଞ୍ଚିଯାଏ । ଆମ ଅଳିଆରେ ଆଉ କିଛି ଜୈବିକ ଅଳିଆ ମଧ୍ୟ ଥାଏ । ଏଗୁଡ଼ିକ ବିନିଯୋଗ କରି ଜୈବିକ ଖତ ମଧ୍ୟ ବାହାର କରାଯାଏ । କିନ୍ତୁ ଏଥିପାଇଁ ଏସବୁ ଜିନିଷକୁ ପ୍ରଥମେ ବାଛି ଅଲଗା କରିବା ଦରକାର । ନହେଲେ ଶୁଖିଲା ଅଳିଆରେ ଓଦା ଅଳିଆ ମିଶି ସେସବୁକୁ ମଇଳା କରିଦେବ ବା କିଛି ବିଷାକ୍ତ ଅଳିଆ ମଧ୍ୟ ମିଶିଯାଇପାରେ । ଏହା କେବଳ ସେ ପାଖରେ ରହୁଥିବା ଲୋକଙ୍କ ପାଇଁ ବିପଦଜନକ ହେବନାହିଁ, ଅଳିଆଗୋଟାଳିଙ୍କ ପାଇଁ ମଧ୍ୟ ବିପଦ ସୃଷ୍ଟି କରିପାରେ । ଏଥିପାଇଁ ବହୁତ ସାବଧାନ ହୋଇ ଅଳିଆକୁ ଅଲଗା କରିବା ଜରୁରୀ ।

# ଅଳିଆର କିସମ

ଅଳିଆର ବି ବିଭିନ୍ନ କିସମ ଥାଏ। ସେଥିରେ କିଛି କ୍ଷୟଶୀଳ ସମ୍ପଦ ମଧ୍ୟ ମିଶି ରହିଥାଏ। ପକାଇବା ବେଳେ ଆମେ ସେ ବିଷୟରେ ଜାଣିପାରେ କି ?

*କିପରି କରିବ*

ଅଳିଆ ବାକ୍ସ, କାଗଜ, କଲମ

*କିପରି କରିବ*

ଗୋଟିଏ ଦିନ ଘରେ ଅଳିଆ ବାକ୍ସ ପାଖରେ ଖଣ୍ଡେ କାଗଜ ଲଗାଇ ଦିଅ । କାଗଜରେ ଗାର ପକାଇ ତାକୁ ତିନି ଭାଗ କର । ଗୋଟିଏ ଭାଗର ଉପରେ ନାଁ ଓ ଦ୍ୱିତୀୟ ଭାଗରେ ଅଳିଆର କିସମ ବୋଲି ଲେଖିଦିଅ । ତୃତୀୟ ଭାଗରେ ଅକ୍ଷୟ ଓ କ୍ଷୟଶୀଳ ଶୀର୍ଷକ ଲେଖ । କାଗଜ ପାଖରେ କଲମଟିଏ ସୂତାରେ ବାନ୍ଧି ଝୁଲାଇଦିଅ ।



ସେଦିନ ଘରେ ଯିଏ ବି ସେ ଅଳିଆ ବାକ୍ସରେ ଅଳିଆ ପକାଇବେ ସେ ତାଙ୍କ ନାଁ ଲେଖିବେ ଓ କି ପ୍ରକାର ଅଳିଆ ପକାଇଲେ ତାହା ଲେଖିବେ । ତୃତୀୟ ଭାଗରେ ଜିନିଷଟି ଅକ୍ଷୟ ବା କ୍ଷୟଶୀଳ ତାହା ଲେଖିବେ । ସନ୍ଧ୍ୟା ବେଳକୁ ତାଲିକାକୁ ଦେଖ । ଆଲୁମିନିଅମ, ଟିଣ, ଲୁହା, ଷ୍ଟିଲ, ମହମ ଆଦି କ୍ଷୟଶୀଳ ଜିନିଷ । କାରଣ ଏସବୁ ସୃଷ୍ଟି ହେବା ପାଇଁ କେତେ କୋଟି ବର୍ଷ ଲାଗିଛି । ଏଗୁଡ଼ିକର ପରିମାଣ ସୀମିତ । ଥରେ ସରିଗଲେ ଆଉ ମିଳିବନାହିଁ । ସେଥିପାଇଁ ଏଗୁଡ଼ିକୁ ପୁଣି ଥରେ ବ୍ୟବହାର କରିବା ଜରୁରୀ । ସେହିଭଳି କାଗଜ ଆଉ ଗୋଟିଏ ଅଳିଆ । ଏହା ଅକ୍ଷୟ ସମ୍ପଦ । କାରଣ ଏହା ଗଛରୁ ଆସୁଛି ଓ ଗଛ ପୁଣି ଥରେ ବଢ଼ାଯାଇ ପାରିବ । କିନ୍ତୁ ଯେଉଁ ହାରରେ ଗଛ ବଢ଼ିବ ତା'ଠାରୁ ଅଧିକ ଜୋରରେ ଗଛ କାଟିଲେ ତାହା ମଧ୍ୟ ଆଉ ଅକ୍ଷୟ ସମ୍ପଦ ହୋଇ ରହିବ ନାହିଁ ।

# ଅଳିଆକୁ କ'ଣ କରିବା

ଘରେ ହେଉ ବା ସ୍କୁଲରେ ହେଉ ସବୁଠାରେ ବିଭିନ୍ନ କିସମର ଅଳିଆ ବାହାରେ। ସେସବୁକୁ ନେଇ ଏଣେ ତେଣେ ଫିଙ୍ଗି ଦେଲେ ପରିବେଶ ଖରାପ ହୁଏ। ତେଣୁ କେଉଁ କିସମର ଅଳିଆକୁ କିପରି ଫିଙ୍ଗିବା ?

*କ'ଣ ଦରକାର*

କାଗଜ, କଲମ, ସ୍କେଚ କଲମ

*କିପରି କରିବ*

କାଗଜ, କଲମ ଓ ସ୍କେଚ କଲମ ଦେଇ ଗୋଟିଏ ପୋଷ୍ଟର ତିଆରି କର। ଏଥିରେ କେଉଁ ପ୍ରକାରର ଅଳିଆ କିପରି ଅଲଗା କରିବ ଓ ତାକୁ କ'ଣ କରିବ ସେଥିରେ ଚିତ୍ର ସହ ଲେଖା ରଖ। ଏହାକୁ ଦେଖି ଘରେ ମଧ୍ୟ ସେହିଭଳି ଅଳିଆକୁ ଅଲଗା ଅଲଗା କରିପାରିବ।

**ଜୈବ ଅଳିଆ**

ଅଲଗା ଡବାରେ ରଖି ତାକୁ ବଗିଚାରେ ଗାତ ଖୋଳି ପକାଇଦେବ। ସେଥିରୁ ଖତ ପ୍ରସ୍ତୁତ କରାଯିବ।



## ଶୁଖିଲା ଅଳିଆ

ଏଥିରେ ମୁଖ୍ୟତଃ କାଗଜ, କାଚ, ଧାତୁ, ଆଦି ଥାଏ । ଏସବୁକୁ ଅଲଗା ଡବାରେ ରଖି କବାଡ଼ିବାଲାକୁ ଦେଇଦେବ । ଏହାକୁ ପୁଣି ଥରେ ବ୍ୟବହାର କରି ଅଖା, ହାତ ତିଆରି କାଗଜ ଆଦି ତିଆରି କରାଯାଏ ।





## ଚିକିତ୍ସା ଅଳିଆ

ଏଥିରେ ମୁଖ୍ୟତଃ ଡାକ୍ତରଖାନା ବା ନର୍ସିଙ୍ଗ ହୋମ୍‌ରୁ ବାହାରୁଥିବା ରକ୍ତଲଗା ତୁଳା, ବ୍ୟାଣ୍ଡେଜ, ସିରିଞ୍ଜ, ଛୁଞ୍ଚି, ସାଲାଇନ ବୋତଲ ଓ ନଳୀ ଆଦି ଥାଏ । ଏଗୁଡ଼ିକୁ ଅଲଗା କରି ସଂଗ୍ରହ କରି ଭଲ କରି ବାନ୍ଧି ମ୍ୟୁନିସିପାଲିଟି ଲୋକଙ୍କୁ ଦେଇଦେବ । ସେମାନେ ତାକୁ ସ୍ୱତନ୍ତ୍ର ଧାରାରେ ପୋଡ଼ିଦେବେ ବା ଖାଲୁଆ ଜାଗା ପୋତିବା ପାଇଁ ବ୍ୟବହାର କରିବେ ।

## ବିଷାକ୍ତ ଅଳିଆ

ରାସାୟନିକ ଜିନିଷ, କୀଟନାଶକ, ରଙ୍ଗ, ଭଙ୍ଗା ବାର୍ ଲାଇଟ୍, ପୁରୁଣା ହୋଇଯାଇଥିବା ଔଷଧ ଆଦି ଏହି ଶ୍ରେଣୀର । ଏଗୁଡ଼ିକ ମଧ୍ୟ ଅଲଗା ଭାବରେ ସଂଗ୍ରହ କରି ମ୍ୟୁନିସିପାଲିଟି ଲୋକଙ୍କୁ ଦେଇଦେବ । ସେଗୁଡିକ ଖାଲୁଆ ଜାଗା ପୋତିବା ପାଇଁ ବ୍ୟବହାର ହେବ ।



# ଜୀବପାଚ୍ୟ ଓ ଜୀବଅପାଚ୍ୟ

ଅଳିଆ ଭିତରୁ କେତେକ ମାଟିରେ ମିଶିଯାଏ ଓ ଆଉ କିଛି ଅଳିଆ ବର୍ଷ ବର୍ଷ ଧରି ପଡ଼ି ରହିଥିଲେ ବି ମାଟିରେ ମିଶେନାହିଁ। ମାଟିରେ ମିଶିବା ପାଇଁ ଗେଣ୍ଡୁ ମାଛି ଆଦି କୀଟଙ୍କଠାରୁ ଆରମ୍ଭ କରି ଅଣୁଜୀବଙ୍କର ବଡ଼ ଭୂମିକା ରହିଛି। ତେବେ ଆଗ ଜାଣିବା ଦରକାର ଯେ କେଉଁ ଜିନିଷ ମାଟିରେ ମିଶିପାରେ ବା ଜୀବପାଚ୍ୟ ଶ୍ରେଣୀର ଏବଂ କାହାକୁ ଅଣୁଜୀବ ମାଟିରେ ମିଶେଇ ପାରେନାହିଁ ବା କିଏ ଜୀବଅପାଚ୍ୟ ଶ୍ରେଣୀର ଅଳିଆ।

*କ'ଣ ଦରକାର*

ଚାରିପଟରୁ ସଂଗ୍ରହ କରିଥିବା ଅନେକ ଜିନିଷ

*କିପରି କରିବ*





ଗୋଟିଏ ଜାଗାରେ କାଗଜ, ପ୍ଲାଷ୍ଟିକ ଡବା, ଠିପି, ଜରିମୁଣି, ଆଲୁମିନିଅମ ଡବା, ଟିଣ ଡବା, ଜରି କାଗଜ, ବିଭିନ୍ନ ଫଳ, ପରିବା, ପତ୍ର, ଫୁଲ, ମଲା ପ୍ରଜାପତି ବା ଅନ୍ୟ କୀଟ ଆଦି ଅନେକ ପ୍ରକାରର ଜିନିଷ ଗଦାଇ ରଖ। ଗଦାର ଦୁଇ କଡ଼ରେ ପ୍ରାୟ ୧୫୦ ସେ.ମି. ଦୂରରେ ଦୁଇଟି ବଡ଼ ପ୍ଲାଷ୍ଟିକ ଟବ୍ ରଖ। ଗୋଟିଏ ଟବ୍‌ରେ ଜୀବପାଚ୍ୟ ଓ ଆରଟିରେ ଜୀବଅପାଚ୍ୟ ଲେଖିଦିଅ।

ପିଲାଙ୍କୁ ଦୁଇଭାଗ କର ଓ ପ୍ରତି ଭାଗର ପିଲାଙ୍କୁ ଜଣ ଜଣ କରି ଡାକ। ସେମାନେ ଗୋଟିଏ ଲେଖାଏଁ ଜିନିଷ ଉଠାଇ ଟବ୍‌ରେ ରଖିବେ। ଜୀବପାଚ୍ୟ ଓ ଜୀବଅପାଚ୍ୟ ଜିନିଷକୁ ଅଲଗା କରିପାରୁଛନ୍ତି କି ନାହିଁ ଦେଖିବା ଏହି ଖେଳର ଉଦ୍ଦେଶ୍ୟ। ସବୁ ଜିନିଷ ବାଛି ଅଲଗା କରିଦେବା ପରେ ଦେଖ କେଉଁ ଦଳର କେତେ ଠିକ୍ ବା ଭୁଲ। ଖେଳଟିକୁ ଆହୁରି ଆଗ୍ରହଜନକ କରିବା ପାଇଁ ଜିନିଷଗୁଡ଼ିକୁ ପୁଣିଥରେ ମିଶାଇ ଦିଅ। ଏବେ ପିଲାଙ୍କ ଆଖିରେ ପଟି ବାନ୍ଧିଦିଅ। ସେମାନେ ହାତରେ ଛୁଇଁ ବା ଶୁଙ୍ଘି ଜିନିଷଟିକୁ ଚିହ୍ନିବାକୁ ଚେଷ୍ଟା କରିବେ ଓ ଜୀବପାଚ୍ୟ ବା ଜୀବଅପାଚ୍ୟ ବୋଲି ଚିହ୍ନଟ କରିବେ।

# ଜିନିଷ ଅଦଳ ବଦଳ

ଆଗେ ଲୋକମାନେ ନିଜର ଜିନିଷ ଅଦଳ ବଦଳ କରୁଥିଲେ। କାହା ପାଖରେ କିଛି ଅଧିକା ହୋଇଗଲେ ସେ ତାହା ଦେଇ ଅନ୍ୟଠାରୁ ଦରକାରୀ ଜିନିଷ ଆଣୁଥିଲେ। ତେଣୁ ଜଣକର ଅଦରକାରୀ ଜିନିଷ ଆଉ କାହାର ଦରକାରରେ ଆସୁଥିଲା। ଫଳରେ ଅଳିଆର ପରିମାଣ କମ୍ ହେଉଥିଲା। ଏବେ ବି ପିଲାଙ୍କ ଭିତରେ ସେଭଳି କରିହେବ।

### କ'ଣ ଦରକାର

ଗୋଟିଏ ବଡ଼ କାଗଜ ବାକ୍ସ, ପିଲା ଘରୁ ଆଣିଥିବା ପୁରୁଣା ଖେଳନା ଆଦି ଜିନିଷ

### କିପରି କରିବ

ଶ୍ରେଣୀ କୋଠରୀର ପଛ ଆଡ଼କୁ ଗୋଟିଏ କୋଣରେ ଗୋଟିଏ ବଡ଼ ଡବା ବା ବାକ୍ସ ରଖ। ପ୍ରତି ପିଲା ତା'ର ଦରକାରରେ ଆସୁନଥିବା ଗୋଟିଏ ବା ଦୁଇଟି ଜିନିଷ ଘରୁ ଆଣିବ ଓ ସେହି ବାକ୍ସରେ ରଖିବ।



ସବୁ ଜିନିଷ ଏକାଠି ହୋଇଗଲା ପରେ ଜଣ ଜଣ କରି ପିଲାଙ୍କୁ ଡାକ ଏବଂ ନିଜ ପସନ୍ଦର ଜିନିଷ ବାଛିନେବାକୁ କୁହ। ଜଣକର ପୁରୁଣା ଜିନିଷ ଆଉ ଜଣକର ଦରକାର ହୋଇପାରେ।

ଶେଷରେ କେତେ କମ୍ ବା ବେଶୀ ଜିନିଷ ବଳିଲା ଦେଖ। ସେତିକି ମାତ୍ର ଅଳିଆ।

କେହି ପିଲା ନିଜର ପୁରୁଣା ଜିନିଷକୁ ନେବାପାଇଁ ବାଛିଲା କି ?

# ଅଳିଆଗୋଟାଳିଙ୍କ ସହ ଦିନେ

ଅଳିଆଗଦାରୁ ଅନେକ ଦରକାରୀ ଜିନିଷକୁ ଅଳିଆଗୋଟାଳି ଖୋଜି ନିଅନ୍ତି । ଅଳିଆ ଗଦା ସଫା କରିବାରେ ତାଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ବିଷୟରେ ଆମେ କେବେ ଚିନ୍ତା କରିଛେ କି ?

*କ'ଣ ଦରକାର*

କାଗଜ, କଲମ

*କିପରି କରିବ*

ଅଳିଆଗୋଟାଳିଙ୍କ ସହ କଥା ହୋଇ ମଧ୍ୟ ଅନେକ କଥା ଜାଣିପାରିବ । ଏଥିପାଇଁ ଆଗରୁ ଗୋଟିଏ ପ୍ରଶ୍ନାବଳୀ ତିଆରି କରିବ ଓ ସେଇ ଅନୁସାରେ ଅଳିଆଗୋଟାଳି ସହ କଥା ହେବ ।



*ନମୁନା ପ୍ରଶ୍ନାବଳୀ*

୧. ପିଲାର ନାଁ

୨. ଅଳିଆଗୋଟାଳି ପିଲାର ନାଁ

୩. ବୟସ

୪. କେତେ ଦିନ ଧରି ଏହି କାମ କରୁଛନ୍ତି

୫. ଅଳିଆ ଗଦାରୁ କି ପ୍ରକାରର ଜିନିଷ ଗୋଟାଇ ଥାଆନ୍ତି

୬. ନିଜେ ବାଛି ଅଲଗା କରନ୍ତି ନା ସବୁ ଏକାଠି ରଖନ୍ତି

୭. ଏହାକୁ ନେଇ କ'ଣ କରନ୍ତି

୮. ଏଥିରୁ ଦିନକୁ କେତେ ରୋଜଗାର କରନ୍ତି

୯. ସେମାନଙ୍କର କେବେ ଦେହ ଖରାପ ହୁଏ କି

୧୦. ଅଳିଆ ଗୋଟାଇବା ବେଳେ ସେମାନେ ହାତରେ ଗ୍ଲୋବସ୍, ଗୋଡ଼ରେ ଜୋତା ଆଦି ପିନ୍ଧିଥା'ନ୍ତି କି

୧୧. ଘରର ଆଉ କେହି ଏହି କାମରେ ତାଙ୍କ ସହ ସାମିଲ ହୁଅନ୍ତି କି

# ହାତତିଆରି କାଗଜ

ଆମର ଅଳିଆ ଭିତରେ କାଗଜର ପରିମାଣ ବହୁତ ଥାଏ। ଥରେ ଲେଖିଦେବା ପରେ ସେଗୁଡ଼ିକ ଆଉ କାମରେ ଲାଗେନାହିଁ। ସେହିଭଳି ଖବର କାଗଜ, ପୁରୁଣା ପତ୍ରିକା ଆଦି ମଧ୍ୟ ଆଉ କାମରେ ଲାଗେନାହିଁ। ସେଗୁଡ଼ିକୁ ଆମେ ଠୁଙ୍ଗାବାଲାକୁ ଦେଇଦିଏ। କିନ୍ତୁ ସେଥିରୁ ସୁନ୍ଦର ହାତତିଆରି କାଗଜ ତିଆରି କରିହେବ।

### *କ'ଣ ଦରକାର*

ପୁରୁଣା ଖବର କାଗଜ ବା ଅନ୍ୟ କାଗଜ, ବାଲ୍‌ଟି, ମଗ୍, ପାଣି, ଚାଲୁଣି (ଅଟାଚଲା), ମୋଟା ତଉଲିଆ

### *କିପରି କରିବ*

ପ୍ରଥମେ ପୁରୁଣା କାଗଜକୁ ଛୋଟ ଛୋଟ କରି ଚିରିଦିଅ। ଏହାକୁ ଗୋଟିଏ ବାଲ୍‌ଟିରେ ରଖି ବୁଡ଼ିବା ଯାଏଁ ପାଣି ଦେଇଦିଅ। ଏହାକୁ ଦୁଇ ତିନି ଦିନ ଏହିପରି ବତୁରାଇ ରଖ।





ଦୁଇ ତିନି ଦିନ ବତୁରିବା ପରେ କାଗଜ ନରମ ହୋଇ ଯାଇଥିବ। ଏହାକୁ ହାତରେ ଭଲ କରି ଚକଟି ଦିଅ ଯେପରି ତାହା ବାଟି ହୋଇ ପାଣିରେ ମିଶିଯିବ। ଏହା ହେଉଛି କାଗଜ ତିଆରି ପାଇଁ ମଣ୍ଡ। ଏବେ ଏଥିରେ ପାଣି ମିଶାଇ ଅଳ୍ପ ପାଣିଆ କର।

ଗୋଟିଏ ଚଟକା ପାତ୍ରରେ ଅଟାଚଲାକୁ ରଖି ପାଣି ପୂରାଅ, ଯେପରି ଚାଲୁଣିଟି ଅଧାଅଧି ବୁଡ଼ିବ । ଯାହାର ତଳ ଜାଲିଟି ବାହାରି ଆସୁଥିବ ସେଭଳି ଅଟାଚଲା ଭଲ କାମ ଦେବ । ମଗ୍‌ରେ ପାଣିଆ ମଣ୍ଡ ନେଇ ଏହି ଜାଲି ଉପରେ ଢାଳ । ତାକୁ ଏପଟ ସେପଟ କର ଯେପରି ମଣ୍ଡ ଜାଲି ଉପରେ ସମାନ ଭାବରେ ଖେଳାଇ ହୋଇଯିବ ।





ଅଟାଚଲାକୁ ଦୁଇପଟ ଧାରରୁ ଧରି ସାବଧାନ୍ ହୋଇ କାଢ଼ିଆଣ । ଦେଖ ତାହା ଯେପରି କେଉଁ ପଟକୁ ବେଶୀ ଢଳିବ ନାହିଁ । ବଙ୍କା ରହିଲେ କାଗଜ ଗୋଟିଏ ପଟେ ମୋଟା ହୋଇଯିବ । ଚାଲୁଣିକୁ ତଳେ ଥୋଇଦିଅ, ଯେପରି ଅଧିକା ପାଣି ନିଗିଡ଼ିଯିବ ।

ତଳଆଡୁ ଚାପି ଅଟାଚଲାର ଜାଲିଟିକୁ କାଢ଼ିଆଣ ଓ ମୋଟା କନା ଉପରେ ରଖି ଚାପିଦିଅ । ପାଣି ବାହାରିଯିବ । ଏବେ ଧୀରେ କରି ମଣ୍ଡର ପରସ୍ତକୁ ଜାଲି ଉପରୁ କାଢ଼ିଆଣ ଓ ଖରାରେ ଶୁଖାଇଦିଅ । ଶୁଖିଗଲା ପରେ ଆମର ହାତତିଆରି କାଗଜ ମିଳିଯିବ । ସେଥିରେ ଗରମ ଇସ୍ତ୍ରୀ ଚଲାଇଦେଲେ ଲୋଚାକୋଚା କାଗଜଟି ପାଲିସ ହୋଇଯିବ । ଏଥିରେ କ୍ରେୟନରେ ବିଭିନ୍ନ ଚିତ୍ର, ମୁଖା ଆଦି ଆଙ୍କି ଶ୍ରେଣୀ, ସ୍କୁଲ ହତା ସଜାଇପାରିବ । ଜାଲିଟି ଯେତେବଡ଼ ହେବ କାଗଜଟି ମଧ୍ୟ ସେତେ ବଡ଼ ହେବ । କିନ୍ତୁ ଅତି ବଡ଼ ହେଲେ ତାକୁ ଜାଲିରୁ ବାହାର କରିବାରେ ଅସୁବିଧା ହେବ ।



# ମହମ ବତୀ ତିଆରି

ଦୀପାବଳୀରେ ମହମ ବତୀ ଜାଳିବା ପରେ ଅନେକ ଛୋଟ ଟୁକୁଡ଼ା ବଳିପଡ଼େ। ସେଗୁଡ଼ିକ ଆମେ ଫିଙ୍ଗିଦିଏ। କିନ୍ତୁ ସେଗୁଡ଼ିକ ମିଶାଇ ପୁଣି ଥରେ ମହମ ବତୀ ତିଆରି କରିପାରିବା।

### କ'ଣ ଦରକାର

ମହମ ବତୀ ଟୁକୁଡ଼ା, ପୁରୁଣା ମହମ ରଙ୍ଗ କ୍ରେୟନ୍, ମୋଟା ସୂତା, ଚାମଚ, କାଗଜ କପ୍, ମହମ ଗରମ କରିବା ପାଇଁ ଅଦରକାରୀ ଆଲୁମିନିଅମ ବାସନ ବା ଖୋଲାମୁହାଁ ଟିଣ ଡବା।

### କିପରି କରିବ

କାଗଜ କପ୍‌ର ତଳପଟେ ମଝିରେ କଣା କର। କଣାରେ ମୋଟା ସୂତା ପୂରାଇ କପ୍‌ର ତଳପଟେ ଗଣ୍ଠି ପକାଇଦିଅ ଯେପରି ସୂତାଟି ଖସିଯିବ ନାହିଁ। ପୁରୁଣା ମହମବତୀ ଓ ରଙ୍ଗ କ୍ରେୟନ୍‌କୁ ଆଲୁମିନିଅମ ଡାଗା ବା ଟିଣ ଡବାରେ ରଖ। ତାକୁ ଧୀର ନିଆଁରେ ଗରମ କର ଯେପରି ମହମ ଓ କ୍ରେୟନ୍ ତରଳି ମିଶିଯିବ। ଏହି ତରଳ ମହମକୁ ଧୀରେ କରି କାଗଜ କପ୍ ଭିତରେ ଢାଳିଦିଅ ଓ କପ୍‌ଟିର ମୋଟା ସୂତାକୁ ଗୋଟିଏ ଉଚ୍ଚ ଡାଗାରେ ବାନ୍ଧିଦିଅ ଯେପରି କପ୍‌ଟି ସିଧାହୋଇ ଝୁଲି ରହିବ।




ମହମ ଥଣ୍ଡା ହୋଇ ଆସିଲେ ସୂତାକୁ ଭିଡ଼ି କପ୍‌ର ମଝିରେ ସିଧା କରି ରଖ। ପୂରା ଥଣ୍ଡା ହୋଇଗଲେ ମହମ କଠିନ ହୋଇଯିବ। ଝୁଲୁଥିବା ମୋଟା ସୂତା ସହ ମହମ କପ୍‌କୁ ଖୋଲିଆଣ ଏବଂ ଯେତିକି ଦରକାର ସେତିକି ରଖି ସୂତା କାଟିଦିଅ। ତଳୁ ଗଣ୍ଠିଟି ବି କାଟିଦିଅ। ମହମବତୀ ତିଆରି ହୋଇଗଲା। ଏଥିରେ ରଙ୍ଗ କ୍ରେୟନ୍ ମିଶିଥିବାରୁ ମହମବତୀଟି ରଙ୍ଗୀନ ହେବ। ତେବେ ଏହା ଜଳିଲେ ଆଲୁଅର ରଙ୍ଗ କ'ଣ ହେବ ?

# ମହମ ବତୀ ଛାଞ୍ଚ

ପୁରୁଣା ଟୁକୁଡ଼ା ମହମ ବତୀ ବା ମହମ ଖଣ୍ଡରୁ କିପରି ମହମ ବତୀ ତିଆରି କରିପାରିବା ଦେଖିଲେ। ଆଉ ଗୋଟିଏ ବାଟରେ ବି ଆମେ ମହମ ବତୀ ତିଆରି କରିପାରିବା।

*କ'ଣ ଦରକାର*

ଅଣ୍ଡା ରଖାଯାଉଥିବା ଖୋଳ, ପୁରୁଣା ମହମ ବତୀ, ବଡ଼ ଛୁଞ୍ଚି, ମୋଟା ସୂତା, କଇଁଚି, ମହମ ତରଳାଇବା ପାଇଁ ଡାଗା, ପୁରୁଣା ମହମ ରଙ୍ଗ,

*କିପରି କରିବ*

ପୁରୁଣା ଟୁକୁଡ଼ା ମହମ ବତୀ ସବୁକୁ ଏକାଠି କରିଦିଅ। ଦୋକାନୀଠାରୁ ଅଣ୍ଡା ରଖାଯାଉଥିବା ଖୋଳଟିଏ ଆଣ। ମୋଟା ସୂତାକୁ ଛୋଟ ଖଣ୍ଡ କରି କାଟ। ବଡ଼ ଛୁଞ୍ଚି ସାହାଯ୍ୟରେ କଣା କରି ମୋଟା ସୂତା ଖଣ୍ଡେ ପୂରାଅ। ତଳପଟେ ଗୋଟିଏ ଗଣ୍ଠି ପକାଇଦିଅ ଯେପରି ସୂତାଟି ବାହାରି ଯିବ ନାହିଁ। ଏବେ ମହମ ଟୁକୁଡ଼ା ଓ ପୁରୁଣା ମହମ ରଙ୍ଗକୁ ଏକାଠି କରି ଗୋଟିଏ ଆଲୁମିନିଅମ ଡାଗାରେ



ଗରମ କର। ମୋଟା ସୂତାକୁ ଉପରକୁ ଧରି ଅଣ୍ଡାଖୋଳର ଖୋପରେ ତରଳ ମହମ ଢାଳ। ଟିକିଏ ସମୟ ପରେ ମହମ ବସିଗଲା ପରେ ଆଉ ଗୋଟିଏ ଖୋପରେ ଢାଳ। ଏହିପରି ସବୁ ଖୋପରେ ତରଳ ମହମ ଢାଳ। ଢାଳିବା ବେଳେ ସୂତାକୁ ଉପରକୁ ଟେକି ସିଧାକରି ଧରିବାକୁ ହେବ। କିଛି ସମୟ ଛାଡ଼ିଦେଲେ ସବୁ ଖୋପରେ ମହମ ବସିଯିବ ଓ ଟାଣ ହୋଇଯିବ। ଏବେ ତଳୁ ଗଣ୍ଠିଗୁଡ଼ିକ କାଟିଦିଅ ଓ ଆସ୍ତେ କରି ଖୋପରୁ ମହମ ବତୀ ବାହାର କରିଆଣ। ଏଥର ଦୀପାବଳୀରେ ନିଜେ ଏହିଭଳି ମହମ ବତୀ ତିଆରି କରି ଜାଳିପାରିବ।

# ଲେଭେଲ୍ ତିଆରି

କୌଣସି ଜାଗାର ପୃଷ୍ଠତଳ ମାପିବା ପାଇଁ ମିସ୍ତ୍ରିମାନେ ସ୍ପିରିଟ ଲେଭେଲ୍ ବ୍ୟବହାର କରୁଥିବାର ଦେଖିଥିବ। ଚଟାଣ ତିଆରି ବେଳେ ତାହା ଠିକ ହେଲା ବା ଗଡ଼ାଣିଆ ହେଲା ସେକଥା ଏଥିରେ ଜଣାପଡ଼େ। ଆମେ ବି ସେହିଭଳି ଗୋଟିଏ ଲେଭେଲ୍ ତିଆରି କରିପାରିବା।

### *କ'ଣ ଦରକାର*

ପୁରୁଣା ବଲ୍ ପେନ୍‌ର ସ୍ୱଚ୍ଛ ପ୍ଲାଷ୍ଟିକ ନଳୀ, ପିଚୁ,

### *କିପରି କରିବ*

ସ୍ୱଚ୍ଛ ବଲ୍ ପେନ୍‌ର ଦେହ ବା ଅନ୍ୟ ପ୍ଲାଷ୍ଟିକ ନଳୀ ଖଣ୍ଡେ ନିଅ। ନଳୀଟି ଯେପରି ପୂରା ସିଧା ଓ ଟାଣ ହୋଇଥାଏ। ଏହାର ଗୋଟିଏ ମୁଣ୍ଡ ପିଚୁ ଦେଇ ଭଲକରି ବନ୍ଦ କରିଦିଅ। ଉପରୁ ଅଳ୍ପ ଟିକିଏ ଖାଲି ରଖି ସେଥିରେ ପାଣି ଭର୍ତ୍ତି କରିଦିଅ। ଆର ମୁଣ୍ଡଟି ମଧ୍ୟ ପିଚୁ ଦେଇ ବନ୍ଦ କରିଦିଅ। ନଳୀ ଉପରୁ ସବୁ ପିଚୁ ବାହାର କରିଦିଅ। ନଳୀ ଭିତରେ ଗୋଟିଏ ପବନ ଫୋଟକା ଦେଖାଯାଉଥିବ। ନଳୀଟିକୁ ଅଣାଇଲେ ଫୋଟକାଟି ମଧ୍ୟ ତଳ ଉପର ହେବ।




ସ୍ୱଚ୍ଛ ପ୍ଲାଷ୍ଟିକ ନଳୀ ଭିତରେ ପାଣି ଓ ପବନ ଫୋଟକା

ନଳୀର ମଝିରେ ଗୋଟିଏ ଚିହ୍ନ ଦିଅ। କୌଣସି ଜାଗାରେ ଏହି ଲେଭେଲ୍‌ଟି ରଖି ଦେଖ ସେ ଜାଗା ସମତଳ ଅଛି ନା ଢାଲୁ ଅଛି। ଯଦି ଫୋଟକାଟି ମଝି ଚିହ୍ନ ଉପରେ ରହିଲା ତେବେ ତାହା ସମତଳ ଅଛି। ଯଦି ଏପଟ ସେପଟ ହେଲା ତେବେ ତାହା ଗଡ଼ାଣିଆ ଅଛି। ଯେଉଁ ପଟକୁ ଗଡ଼ାଣିଆ ଥିବ ଫୋଟକାଟି ତା'ର ଓଲଟା ପଟକୁ ଉଠିରହିବ।

# ହୋଭର୍‌କ୍ରାଫ୍‌ଟ

ମାଟି ଉପରେ କେତେ ପ୍ରକାରର ଗାଡ଼ି ଚାଲେ। ପାଣିରେ ବି ଡଙ୍ଗା, ଜାହାଜ ଆଦି ଚାଲେ। ମାଟି ଉପରର ଗାଡ଼ି ସମୁଦ୍ର ଉପରେ ଚାଲିପାରିବ ନାହିଁ କିମ୍ବା ସମୁଦ୍ରର ଗାଡ଼ି ବା ମାଟି ଉପରେ ଚାଲିପାରିବ ନାହିଁ। କିନ୍ତୁ ଏମିତି ଗୋଟିଏ ଯାନ ଅଛି ଯାହା ମାଟି ଉପରେ ଚାଲିପାରିବ, ସମୁଦ୍ରରେ ବି ଚାଲିପାରିବ। ସେଇଟା ହେଉଛି ହୋଭରକ୍ରାଫ୍‌ଟ। ପବନର ଗୋଟିଏ ଗଦି ଉପରେ ଏହା ଚାଲେ। ଆମେ ଏଠି ଗୋଟିଏ ହୋଭରକ୍ରାଫ୍‌ଟ ତିଆରି କରିବା।

*କ'ଣ ଦରକାର*

ଅଦରକାରୀ ସି.ଡି., ସେଲୋଟେପ୍, ମୋଟା ଛୁଞ୍ଚି, ପୁରୁଣା ସୂତା ରିଲ୍, ବେଲୁନ୍, ଅଠା ଚକଟା

*କିପରି କରିବ*

ଗୋଟିଏ ପୁରୁଣା ସି.ଡି.କୁ ନେଇ ତା'ର ପାଲିସ୍ ପଟଟି ତଳମୁହାଁ କରି ରଖ। ମଝିରେ ଥିବା କଣାକୁ ବନ୍ଦ କରିବା ପାଇଁ ତା' ଉପରେ ଖଣ୍ଡେ ମୋଟା କାଗଜ ସେଲୋଟେପ୍ ଦେଇ ଲଗାଇଦିଅ।



ମୋଟା ଛୁଞ୍ଚିରେ ଫୋଡ଼ି କାଗଜ ମଝିରେ ଗୋଟିଏ ବଡ଼ କଣା (ବଲ୍ ପେନ୍ ରିଫିଲ୍ ଗଳିଲା ଭଳି) କରିଦିଅ। ଗୋଟିଏ ପୁରୁଣା ସୂତା ରିଲ୍ (ସୂତା ଭିତରେ ଥିବା କାଗଜର ନଳୀ) ସେଲୋଟେପ୍ ମଝିରେ କଣା ଉପରେ ଠିଆ କରିଦିଅ। ତାକୁ ସିଧା ଠିଆ ରଖିବା ପାଇଁ ନଳୀର ଚାରିପଟେ ଅଠା ଚକଟା ମାଡ଼ିକରି ଦେଇଦିଅ।

ଏବେ ସୂତା ରିଲ୍‌ଟି ଠିଆ ହେବ ଏବଂ ତା ଚାରିପଟେ ପବନ ବାହାରିଯିବ ନାହିଁ । ଆମର ହୋଭରକ୍ରାଫ୍‌ଟ ହୋଇଗଲା । ଏହାକୁ ଟେବୁଲ୍ ବା ପାଲିସ୍ ଚଟାଣ ଉପରେ ରଖ । ଗୋଟିଏ ବେଲୁନ୍ ଫୁଙ୍କି ତା' ମୁହଁକୁ ଚିପିଧରି ସୂତା ରିଲ୍‌ର ଉପର ମୁଣ୍ଡରେ ଚଢ଼ାଇଦିଅ । ବେଲୁନ ମୁହଁରୁ ହାତ ଛାଡ଼ିଦେଲେ ସି.ଡି. ମଝିର କଣା ବାଟେ ପବନ ବାହାରିବ ଏବଂ ସି.ଡି. ତଳେ ଖେଳାଇ ହୋଇଯିବ ।



ଫଳରେ ହୋଭରକ୍ରାଫ୍‌ଟଟି ଖସି ଚାଲିବ । ବେଲୁନ୍‌ରେ ପବନ ଥିବା ଯାଏଁ ଏହା ଚାଲିବ ।

# ଦୁଇଫାଳିଆ ଫଟୋଷ୍ଟାଣ୍ଡ୍

ଅଦରକାରୀ ସି.ଡି. ଓ ଫ୍ଲପିକୁ ବହୁତ କାମରେ ବ୍ୟବହାର କରିହେବ । ସାଙ୍ଗସାଥି ବା କେହି ଅତି ପ୍ରିୟ ଲୋକର ଫଟୋକୁ ଫ୍ରେମ୍‌ରେ ରଖିଥାଉ । ଏହି ଫ୍ରେମ୍ କାଠ, ପ୍ଲାଷ୍ଟିକ୍ ବା କାଗଜର ହୋଇଥାଏ । କିନ୍ତୁ ପୁରୁଣା ଅଦରକାରୀ ଫ୍ଲପିରୁ ମଧ୍ୟ ସୁନ୍ଦର ଫଟୋଫ୍ରେମ୍ ତିଆରି କରିହେବ ।

***କ'ଣ ଦରକାର***

ପୁରୁଣା ଫ୍ଲପି, ସେଲୋଟେପ୍

***କିପରି କରିବ***

ଫ୍ଲପିର ଗୋଟିଏ ମୁଣ୍ଡରେ ଆଲୁମିନିଅମ୍ ବା ପ୍ଲାଷ୍ଟିକର ଗୋଟିଏ ସଟର୍ ଲାଗିଥାଏ । ତାକୁ ଟାଣି ବାହାର କରିଦିଅ । ବାହାର କରିବା ବେଳେ ସାବଧାନ ହେବ, କାରଣ ତା ଭିତରେ ଗୋଟିଏ ଛୋଟ ସ୍ପ୍ରିଙ୍ଗ ଥାଏ ।



ସ୍ପ୍ରିଙ୍ଗଟିକୁ ସାଇତି ରଖ । ଏହାପରେ ସଟର କଢ଼ା ହୋଇଥିବା ପଟୁ ଧୀରେ ଧୀରେ ଫ୍ଲପିର ପ୍ଲାଷ୍ଟିକ ଫାଳ ଦୁଇଟିକୁ ଦୁଇ ଆଡ଼କୁ ଖୋଲି ଖୋଲି ଯାଅ । ଚାରୋଟି କୋଣ ଖୋଲିଗଲା ପରେ ଫ୍ଲପିର ଦୁଇ ପଟଯାକ ଅଲଗା ହୋଇଯିବ । ଭିତରେ ପ୍ଲାଷ୍ଟିକର ପତଳା ଚକିଟିଏ ଥିବ । ଏହା ହେଉଛି ଗୋଟିଏ ଚୁମ୍ବକୀୟ ପଟି । ତଥ୍ୟ ଏଥିରେ ହିଁ ସଂରକ୍ଷିତ ହୋଇ ରହେ । ଚୁମ୍ବକୀୟ ପଟି ସହିତ ଖଣ୍ଡେ ଖଦଡ଼ା କାଗଜ ଲାଗି ରହିଥିବ । ଫ୍ଲପିରୁ ଚୁମ୍ବକୀୟ ପଟି ଓ କାଗଜଟିକୁ ବାହାର କରିଦିଅ ।

ସ୍ପ୍ରିଙ୍ଗ ସହିତ ଏଗୁଡ଼ିକୁ ମଧ୍ୟ ସାଇତି ରଖିବା । ପରେ ଆଉ କିଛି ଜିନିଷ ତିଆରିରେ ଦରକାର ହେବ ।

କେବଳ ଫ୍ଲପିର ବାହାର ଫାଳ ଦୁଇଟି ନିଅ ଏବଂ ସେଲୋଟେପ୍ ଦେଇ ବହି ଭଳି ଯୋଡ଼ିଦିଅ (ଚିତ୍ର) । ଏବେ ଦୁଇଫାଳିଆ ଫଟୋଷ୍ଟାଣ୍ଡ ତିଆରି ହୋଇଗଲା । ଏହାର ଭିତର ପଟେ ଫଟୋ, ପୁରୁଣା ଚିତ୍ର କାର୍ଡ ବା ଅନ୍ୟ କିଛି ଛବି କାଟି ଲଗାଇ ଦିଅ ଓ ସଜାଇ ରଖିଦିଅ । ଏହାର ଗୋଟିଏ ପଟେ ଚିତ୍ର ଲଗାଇ ଓ ଆର ପଟରେ କିଛି ଲେଖି ସାଙ୍ଗର ଜନ୍ମଦିନରେ ଶୁଭେଚ୍ଛା କାର୍ଡ ଭାବରେ ମଧ୍ୟ ଦେଇପାରିବ ।



# କଲମରଖା ଡବା

ପଢ଼ା ଟେବୁଲରେ କଲମ ପେନ୍‌ସିଲ୍ ସବୁ ଏଣେ ତେଣେ ପଡ଼ିଥିଲେ ଖୋଜିଲା ବେଳକୁ ମିଳେ ନାହିଁ। ହଇରାଣ ହେବାକୁ ପଡ଼େ। ଏସବୁ ଗୋଟିଏ ଜାଗାରେ ରହିପାରିଲେ କେତେ ଭଲ ହୁଅନ୍ତା। ଆମେ ଏବେ କଲମ ପେନ୍‌ସିଲ୍ ରଖିବା ପାଇଁ ଡବାଟିଏ ତିଆରି କରିବା।

### *କ'ଣ ଦରକାର*

ପୁରୁଣା ଫ୍ଲପି ଦୁଇଟି, ସେଲୋଟେପ୍, ପୁରୁଣା ସି.ଡି. ଗୋଟିଏ, ଡେଣ୍ଡ୍ରାଇଟ୍ ବା ଅନ୍ୟ ରବର ଅଠା

### *କିପରି କରିବ*

ଆଗଥର ଭଳି ଫ୍ଲପି ଦୁଇଟିକୁ ଖୋଲିଦିଅ। ଏବେ ଚାରିଫାଳ ଫ୍ଲପି ପାଇଥିବ। ଏଥିରୁ ତିନିଫାଳ ନିଅ। ଏହାର କଡ଼ରେ ସେଲୋଟେପ୍ ଦେଇ ତ୍ରିଭୁଜାକାରରେ ଯୋଡ଼ିଦିଅ। ଯୋଡ଼ିଲାବେଳେ ଦେଖିବ ଯେପରି ଫ୍ଲପିର ବାହାର ପଟଟି ଏଥର ମଧ୍ୟ ବାହାରକୁ ରହିଥିବ।





ଗୋଟିଏ ପୁରୁଣା ସି.ଡି. ନିଅ। ଯୋଡ଼ା ହୋଇଥିବା ଫ୍ଲପିର ତିନିକୋଣିଆ ନଳୀଟିକୁ ସିଡି ଉପରେ ଠିଆ କରି ରଖ। ଫ୍ଲପି ନଳୀର ଗୋଟିଏ ମୁଣ୍ଡରେ ଡେଣ୍ଡ୍ରାଇଟ୍ ଅଠା ଲଗାଇ ତାକୁ ସିଡି ଉପରେ ରଖିଦେଲେ ତାହା ଲାଗିଯିବ। ସିଡିର ମଝିରେ ଥିବା କଣାକୁ କାଗଜ ଲଗାଇ ବନ୍ଦ କରିଦିଅ। ଫ୍ଲପି ତିନି ଫାଳରେ ରଙ୍ଗୀନ ଚିତ୍ର ଲଗାଇଦିଅ।

କଲମରଖା ଡବା ହୋଇଗଲା। ଏହାକୁ ତୁମ ସାଙ୍ଗକୁ ଉପହାର ବି ଦେଇପାରିବ। କିଣା ଉପହାରଠାରୁ ଏଭଳି ହାତତିଆରି ଉପହାର ସାଙ୍ଗର ନିଶ୍ଚୟ ବେଶୀ ପସନ୍ଦ ହେବ।

# କେକ୍ ତିଆରି ଛାଞ୍ଚ

ବଜାରରେ ମିଳୁଥିବା କେକ୍ ତିନିକୋଣିଆ, ଗୋଲ, ଫୁଲ ଆଦି କେତେ ଆକାରର ହୋଇଥାଏ। ଏହାକୁ ଛାଞ୍ଚରେ ରଖି କେକ୍ ତିଆରି କରାଯାଏ। ଅମୁଲ ଡବା ଭିତରୁ ବାହାରୁଥିବା ପତଳା ଟିଣରୁ ମଧ୍ୟ ଏହିଭଳି ଛାଞ୍ଚ ତିଆରି କରିହେବ।

### *କ'ଣ ଦରକାର*

ଅମୁଲ ଡବା ଭିତରର ପତଳା ଟିଣ, କଇଁଚି

### *କିପରି କରିବ*

ଅମୁଲ ବା ସେହିଭଳି କିଛି ଜିନିଷ ଯେଉଁ ଡବାରେ ଆସିଥାଏ ତା'ର ଭିତରେ ପତଳା ଆଲୁମିନିଅମ ବା ଟିଣ ଖଣ୍ଡେ ଥାଏ। ତାକୁ କାଟିଆଣ। କାଟିବା ବେଳେ ସାବଧାନ ହେବ, ନହେଲେ ତା'ର ଧାରରେ ହାତ କଟିଯିବାର ଡର ରହିଛି।

ସେହି ପତଳା ଟିଣ ଚକିର ଧାରକୁ କଇଁଚିରେ ସମାନ କରି କାଟିଦିଅ। ଏବେ ଏହାକୁ ମୋଡି ଗୋଲ, ତିନିକୋଣିଆ, ଫୁଲ ବା ଆଉ କିଛି ଆକାରର କର। କେକ୍ ତିଆରି ଛାଞ୍ଚ ହୋଇଗଲା। ଏବେ ଏଥିରେ କେକ୍ ତିଆରିର ଅଣ ରଖି ମନପସନ୍ଦ ଆକାରର କେକ୍ ପ୍ରସ୍ତୁତ କର।







# ଆଲୁଅ ପ୍ରତିଫଳକ

ଅନେକ ସମୟରେ ଗୋଟିଏ ଜାଗାରୁ ଆଲୁଅ ଆସୁଥିଲେ ତାକୁ ଆମେ ଚାହୁଁଥିବା ଅଞ୍ଚଳକୁ ପ୍ରତିଫଳିତ କରି ପକାଇବାକୁ ପଡ଼ିଥାଏ । ଫଟୋ ଷ୍ଟୁଡିଓରେ ଏହିଭଳି ପ୍ରତିଫଳକ ଥିବାର ଦେଖିଥିବ । ଆମେ ବି ସେହିଭଳି ପ୍ରତିଫଳକ ତିଆରି କରିପାରିବା ।

### *କ'ଣ ଦରକାର*

ପତଳା ଟିଣ ଚକି, କଇଁଚି, ସେଲୋଟେପ, ପଟା କାଗଜ

### *କିପରି କରିବ*

କେକ୍ ଛାଞ୍ଚ ତିଆରି କରିବା ବେଳେ ଯେପରି ଅମୁଲ ଡବାର ଟିଣ ବାହାର କରିଥିଲ ସେହିଭଳି କିଛି ଟିଣ ବାହାର କର । ଟିଣ କାଟିବା ବେଳେ ସାବଧାନ ହେବ, ନହେଲେ ହାତ କଟିଯାଇପାରେ ।




ଚାରି ବା ଛଅଟି ଟିଣ ଏକାଠି କରି ଖଣ୍ଡେ ପଟାକାଗଜ ଉପରେ ପାଖାପାଖି କରି ଲଗାଇ ଦିଅ । ଏହି ଟିଣଲଗା ପଟାକାଗଜ ସାହାଯ୍ୟରେ ସୂର୍ଯ୍ୟର ଆଲୁଅକୁ ପ୍ରତିଫଳିତ କରି ଦରକାର ଜାଗାକୁ ପକାଯାଇ ପାରିବ । ଏହିଭଳି ତିନିଟି ପଟାକାଗଜକୁ ସେଲୋଟେପ ଲଗାଇ ଯୋଡ଼ିଦେଲେ ସେଗୁଡ଼ିକ କବାଟ ଭଳି କମ୍ ବେଶୀ ମେଲାଇ ହେବ ଏବଂ ଛିଡ଼ାକରି ରଖିହେବ ।




ବଡ଼ ପ୍ରତିଫକକ

# ଶଙ୍କୁ

କେକ୍ ଉପରେ ଅନେକ ଚିତ୍ର ହୋଇଥାଏ। ବେଳେ ବେଳେ କିଛି ଲେଖା ମଧ୍ୟ ହୋଇଥାଏ। ଝିଅମାନେ ହାତରେ ମଞ୍ଜୁଆତି ଲଗାଇବା ପାଇଁ ମଧ୍ୟ ଶଙ୍କୁ ବ୍ୟବହାର କରନ୍ତି। ଏହାକୁ ମଧ୍ୟ ସେହି ଟିଣରୁ କରିହେବ।

*କ'ଣ ଦରକାର*

ଟିଣ, କଇଁଚି

*କିପରି କରିବ*

ଆଗ ଥର ଭଳି ଅମୁଲ ଡବାର ଟିଣ ସାବଧାନ ହୋଇ କାଟିଦିଅ। ତା'ର ଚାରିପଟକୁ କଇଁଚିରେ ସମାନ କରିଦିଅ। ଏବେ ଚିତ୍ରରେ ଦେଖାଗଲା ଭଳି ମଝିଯାଏଁ କାଟ। କଟାର ଦୁଇ ଧାରକୁ ଧରି ଗୋଟିଏ ଉପରେ ଆରଟି ଚଢ଼ାଇଦିଅ। ଶଙ୍କୁ ତିଆରି ହୋଇଗଲା। କେତେ ସରୁ ବା ମୋଟା ଶଙ୍କୁ ଦରକାର ସେଇ ଅନୁସାରେ କଟାର ଦୁଇ ଧାରକୁ ଚିପ। ଏହି ଶଙ୍କୁ ଭିତରେ ମଞ୍ଜୁଆତି ରଖି ଲଗାଇ ପାରିବ। କେକ୍ ଉପରେ ଚିତ୍ର କରିବା ବା ଲେଖିବା ପାଇଁ ମଧ୍ୟ ଏହି ଶଙ୍କୁକୁ ବ୍ୟବହାର କରିପାରିବ।





# ଚୁମ୍ବକ ଚିତ୍ର

ଲୁହା ଥାକ ବା ଆଲମାରୀ ଦେହରେ ବିଭିନ୍ନ ପଶୁପକ୍ଷୀ, ଫଳ, ଫୁଲ ବା ଅଛୁରି କେତେ ମଜାଦାର ଆକୃତି ଲାଗିଥିବାର ଦେଖିଥିବ । ପଛକୁ ପଛପଟେ ଗୋଟିଏ ଗୋଟିଏ ଚୁମ୍ବକ ଲାଗିଥାଏ । ଆମେ ବି ସେହିଭଳି ଆକୃତି ତିଆରି କରିପାରିବା ।

*କ'ଣ ଦରକାର*

ଟିଣ, କଇଁଚି, ରଙ୍ଗୀନ ଚିତ୍ର, ଡେନଡ୍ରାଇଟ୍ ଅଠା, ଚୁମ୍ବକ

*କିପରି କରିବ*

ଅମୁଲ ଡବାର ଟିଣ କାଟି ବାହାର କର ବା ସେହିଭଳି କିଛି ଟିଣ ସଂଗ୍ରହ କର । ବିଭିନ୍ନ ପୁରୁଣା ପତ୍ରିକା, ଗ୍ରୀଟିଙ୍ଗ୍‌ସ୍ କାର୍ଡ ଆଦିରୁ ସୁନ୍ଦର ଛୋଟ ଚିତ୍ର କାଟ । ଏହାକୁ ସେହି ଟିଣ ଉପରେ ଅଠାରେ ଲଗାଇଦିଅ । ଟିଣରେ ଲାଗିବା ପାଇଁ ସାଧାରଣ ଅଠା କାମ ଦେବନାହିଁ । ଏଥିପାଇଁ ଡେନଡ୍ରାଇଟ୍ ବା ଅନ୍ୟ ରବର ଅଠା କାମ ଦେବ । ମୋଚିମାନେ ବ୍ୟବହାର କରୁଥିବା ଅଠା ମଧ୍ୟ ଏହି ପ୍ରକାରର । ଏହା ହାର୍ଡୱେର୍ ବା ମନୋହରୀ ଦୋକାନରେ ମିଳିବ ।





ଚିତ୍ର ଅନୁସାରେ ଟିଣକୁ କଇଁଚିରେ କାଟିଦିଅ । ଚିତ୍ରର ପଛପଟେ ଅଠା ଦେଇ ଗୋଟିଏ ଛୋଟ ଚୁମ୍ବକ ଲଗାଇ ଦିଅ । ଏହାକୁ ଲୁହା ଆଲମାରୀ ବା ଅନ୍ୟ ଲୁହା ଜିନିଷରେ ଲଗାଇ ରଖିପାରିବ । ଚିତ୍ର ବଦଳରେ ବିଭିନ୍ନ ଅକ୍ଷର ଓ ସଂଖ୍ୟା ଲେଖି ଛୋଟ ପିଲାଙ୍କୁ ଶିଖାଇ ପାରିବ ।





# ପ୍ରଜାପତି ବାକ୍ସ

ବଗିଚାରେ ସୁନ୍ଦର ପ୍ରଜାପତି ଉଡ଼ୁଥିବାର ଦେଖିଲେ ବହୁତ ଖୁସି ଲାଗେ । କିନ୍ତୁ ସେମାନଙ୍କ ଜୀବନକାଳ ବହୁତ କମ୍ ଦିନ । ତା'ପରେ ସେମାନେ ମରି ଯାଆନ୍ତି । ବଗିଚାରେ ଅନେକ ମଲା ପ୍ରଜାପତି ପଡ଼ିଥିବାର ଦେଖିଥିବ । କିଛିଦିନ ପଡ଼ିରହିବା ପରେ ତାହା ନଷ୍ଟ ହୋଇଯାଏ । ନଷ୍ଟ ହେବା ଆଗରୁ ସେଗୁଡ଼ିକୁ ସଂଗ୍ରହ କରି ରଖିହେବ ।

### *କ'ଣ ଦରକାର*

ସି.ଡି. ରହୁଥିବା ପ୍ଲାଷ୍ଟିକ ଖୋଳ ବା ଜୁଏଲ୍ କେସ୍, ଅଠା, କାଗଜ

### *କିପରି କରିବ*

ସି.ଡି. ରହୁଥିବା ଖୋଳ ବା ଜୁଏଲ କେସ୍‌ରେ ତଳ ପଟେ ଗୋଟିଏ କାଗଜ ଲଗାଇଦିଅ । ସଂଗ୍ରହ କରିଥିବା ପ୍ରଜାପତିକୁ ସାବଧାନ ହୋଇ କାଗଜରେ ଅଠା ଦେଇ ଲଗାଇଦିଅ । ଲଗାଇବା ବେଳେ ଦେଖିବ ଯେପରି ତା'ର ଡେଣା ଛିଣ୍ଡି ନଯାଏ । ପାଖରେ ସଂଗ୍ରହ କରିଥିବା ତାରିଖ ଓ କେଉଁଠି ପାଇଲ ତାହା ଲେଖି ରଖ । କୌଣସି ପ୍ରାଣୀବିଜ୍ଞାନୀଙ୍କୁ ପଚାରି ପ୍ରଜାପତିର ନାଁ ଲେଖିପାରିଲେ ଆହୁରି ଭଲ ହେବ । ଗୋଟିଏ ଡବାରେ ଗୋଟିଏ ବଡ଼ ପ୍ରଜାପତି ବା ଦୁଇ ବା ତିନୋଟି ଛୋଟ ପ୍ରଜାପତି ରଖିଲେ ସୁନ୍ଦର ଦେଖାଯିବ ।



# ସଂଗ୍ରହ ବାକ୍ସ

ଶାମୁକା, ଶଙ୍ଖ, ବିଭିନ୍ନ ରଙ୍ଗର ଛୋଟ ପଥର, ମୁଦ୍ରା, ଡାକଟିକଟ ଆଦି ଆମେ ସଂଗ୍ରହ କରିଥାଉ। ସେଗୁଡ଼ିକୁ ସଜାଇ ରଖିଥାଉ। ସେଥିପାଇଁ ଆମେ ଛୋଟ ଛୋଟ ଡବା ବା ବାକ୍ସରେ ରଖିଥାଉ। କିନ୍ତୁ କିଛି ଫୋପଡ଼ା ଜିନିଷରେ ବି ଆମେ ଏଗୁଡ଼ିକୁ ସଜାଇ ରଖିପାରିବା।

### କ'ଣ ଦରକାର

ସି.ଡି. ରହୁଥିବା ପ୍ଲାଷ୍ଟିକ ଖୋଳ ବା ଜୁଏଲ୍ କେସ୍, ଅଠା

### କିପରି କରିବ

ସି.ଡି. ରହୁଥିବା ଖୋଳ ବା ଜୁଏଲ କେସ୍‌ରେ ତଳ ପଟେ ଗୋଟିଏ କାଗଜ ଲଗାଇଦିଅ । କାଗଜ ଉପରେ ସଂଗ୍ରହ କରିଥିବା ମୁଦ୍ରା, ଡାକଟିକଟ, ଶାମୁକା ଆଦି ସଜାଇ ରଖି ଅଠା ଲଗାଇ ଦିଅ । ତା' ପାଖରେ ସଂଗ୍ରହ କରିଥିବା ତାରିଖ ଲେଖି ରଖ । ଏହିଭଳି ବିଭିନ୍ନ ଜିନିଷ ପାଇଁ ଅଲଗା ଅଲଗା ଡବା ରଖିପାରିବ । ସି.ଡି. ଡବାରେ କେବଳ ପତଳା ଜିନିଷ ରହିପାରିବ । ମୋଟା ଜିନିଷ ପାଇଁ ଛୋଟ ସାବୁନ ଖୋଳ ବା ଅନ୍ୟ ସ୍ୱଚ୍ଛ ପ୍ଲାଷ୍ଟିକ ଡବା ଦରକାର ହେବ ।



# ମଞ୍ଜିରୁ ଗଛ

ଅନେକ ସମୟରେ ଆମେ ଚାରା ପକାଇଥାଉ । ଲଙ୍କା, ବାଇଗଣ, ଟମାଟୋ, ଭେଣ୍ଡି, ଜିନିଆ ଆଦି ଆଗ ଚାରା ପକାଇ ତା' ପରେ ତାକୁ ମାଟିରେ ବା କୁଣ୍ଡରେ ଲଗାଯାଏ । ଏଥିପାଇଁ ଛୋଟ କୁଣ୍ଡ ବା ଚାରା କୁଣ୍ଡ ବ୍ୟବହାର କରାଯାଏ । ଆମେ କିନ୍ତୁ ଅଣ୍ଡା ରଖାଯାଉଥିବା ଖୋଳରେ ଏହା କରିପାରିବା ।

*କ'ଣ ଦରକାର*

ଅଣ୍ଡା ରଖାଯାଉଥିବା ଖୋଳ, ବିଭିନ୍ନ ମଞ୍ଜି, ଖତ ମିଶା ମାଟି

*କିପରି କରିବ*

ପ୍ରଥମେ ମାଟିକୁ ଗୁଣ୍ଡ କର ଓ ସେଥିରେ କିଛି ଗୁଣ୍ଡ ଖତ ମିଶାଅ । ଅଣ୍ଡା ଦୋକାନୀଠାରୁ ଅଣ୍ଡା ରଖାଯାଉଥିବା ଖୋଳଟିଏ ଆଣ । ଏହାର ପ୍ରତି ଖୋପରେ ଖତ ମିଶା ମାଟି ଭର୍ତ୍ତି କର । ମାଟିରେ ମଞ୍ଜି ପୋତିଦିଅ ଓ ଅଳ୍ପ ପାଣି ଛିଞ୍ଚିଦିଅ ।



ପ୍ରତି ଦିନ ପାଣି ଛିଞ୍ଚିବାକୁ ହେବ । ମାଟି ଓଦା ରହିବା ଦରକାର, କିନ୍ତୁ ବେଶୀ ପାଣି ରହିବା ଖରାପ । କିଛି ଦିନ ପରେ ମଞ୍ଜି ଗଜା ହେବ ଓ ଚାରା ବଢ଼ିବ ।

ଚାରା ବଢ଼ିଗଲା ପରେ ତାକୁ ମାଟିରେ ବା କୁଣ୍ଡରେ ଲଗାଇଦିଅ । ଏହିଭଳି ଆମେ ଗୋଟିଏ ଜାଗାରେ ବିଭିନ୍ନ ପ୍ରକାରର ମଞ୍ଜି ଲଗାଇ ଗୁଡ଼ିଏ ଚାରା କରିବାର ସୁବିଧା ପାଇପାରିବା ।

# ପଇସା ବାକ୍ସ

ଅନେକ ସମୟରେ ଆମେ ଖୁଚୁରା ପଇସା ସବୁ ଏକାଠି ରଖିଥାଉ । ଖୋଜିଲା ବେଳେ ଠିକ୍ ଖୁଚୁରା ପଇସା ମିଳେନାହିଁ । ସେଥିପାଇଁ ସେଗୁଡ଼ିକ ଅଲଗା ରଖିବା ଦରକାର । ଅଣ୍ଡା ରହୁଥିବା ଖୋଳରେ ଆମେ ପଇସା ଅଲଗା କରି ରଖିପାରିବା ।

### *କ'ଣ ଦରକାର*

ଅଣ୍ଡା ରହୁଥିବା ଖୋଳ, ଖୁଚୁରା ପଇସା

### *କିପରି କରିବ*

ଅଣ୍ଡା ଦୋକାନୀ ଯେଉଁ ଖୋଳରେ ଅଣ୍ଡା ରଖିଥାଏ ଦେଖିଥିବା । ସେଥିରେ ଅନେକ ଗୁଡ଼ିଏ ଖୋପ ଥାଏ । ପ୍ରତି ଖୋପରେ ଗୋଟିଏ ଲେଖାଏଁ ଅଣ୍ଡା ସେ ରଖିଥାଏ । ସେହିଭଳି ଗୋଟିଏ ଅଣ୍ଡା ଖୋଳ ଆଣ । ତାକୁ ଛୋଟ କରି କାଟିଦିଅ ଯେପରି ମାତ୍ର ୬-୮ଟା ଖୋପ ରହିବ । ଏବେ ଏହାକୁ ଥାକରେ ବା ଟେବୁଲ ତ୍ର ଭିତରେ ରଖିଦିଅ । ପ୍ରତି ଖୋପରେ ଅଲଗା ଅଲଗା ଖୁଚୁରା ପଇସା ରଖ । ଦରକାର ଅନୁସାରେ ଖୁଚୁରା ପାଇବାରେ ଆଉ ଅସୁବିଧା ହେବନାହିଁ ।



# ଡ୍ର ସଜଡ଼ା

ଟେବୁଲ ଡ୍ର'ରେ ଆମେ ଅନେକ ପ୍ରକାରର ଜିନିଷ ରଖିଥାଉ। ପିନ୍, କଣ୍ଟା, କାଗଜ କ୍ଲିପ୍, ରବର, ପେନ୍‌ସିଲ୍‌କଟା କଳ, ରବର ବ୍ୟାଣ୍ଡ ଆଦି କେତେ ଦରକାରୀ ଜିନିଷ ସେଠି ରହିଥାଏ। କିନ୍ତୁ ସେସବୁ ମିଶିଯାଏ ଓ ଖୋଜିଲା ବେଳେ ଠିକ୍ ଜିନିଷଟି ମିଳେନାହିଁ। ଆମେ କିନ୍ତୁ ଅତି ସହଜରେ ସେସବୁକୁ ସଜାଡ଼ି ରଖିପାରିବା।

*କ'ଣ ଦରକାର*

ଅଣ୍ଡା ରଖାଯାଉଥିବା ଖୋଳ

*କିପରି କରିବ*

ଅଣ୍ଡା ଦୋକାନୀଠାରୁ ଗୋଟିଏ ଅଣ୍ଡା ରଖାଯାଉଥିବା ଖୋଳ ଆଣ। ତାକୁ ଟେବୁଲ ଡ୍ର ଆକାରରେ କାଟିଦିଅ। ଡ୍ର ଭିତରେ ଏହାକୁ ରଖିଦିଅ। ପ୍ରତି ଖୋପରେ ଆଲ୍‌ପିନ୍, କାଗଜ କ୍ଲିପ୍, ରବର ବ୍ୟାଣ୍ଡ, ପେନ୍‌ସିଲ୍‌କଟା କଳ ଆଦ ଅଲଗା ଅଲଗା ଜିନିଷ ସଜାଡ଼ି ରଖିଦିଅ।

ଏବେ ଖୋଜିଲା ବେଳେ ଦରକାରୀ ଜିନିଷ ପାଇବାରେ ଆଉ ଅସୁବିଧା ହେବ ନାହିଁ।



# ଅଳିଆରୁ ବାଜା

ମେଳାରୁ ଆମେ ଅନେକ ପ୍ରକାରର ବାଜା କିଣିଥିବା । ପତ୍ର, ମଞ୍ଜି, ବେଲୁନ, ଷ୍ଟ୍ର ଆଦିରେ ବି କେତେ ପ୍ରକାରର ଆମେ ତିଆରି କରିଛେ । ଏବେ କିଛି ଅଦରକାରୀ ଜିନିଷରୁ କେତେ ପ୍ରକାରର ବାଜା ତିଆରି କରିବା ।

*କ'ଣ ଦରକାର*

ଖାଲି ବୋତଲ, ଓମ୍‌ଫ୍ରେଡ ଦହି କପ୍, ଖାଲି ପ୍ଲାଷ୍ଟିକ ଡବା, ପତଳା ଆଲୁମିନିଅମ ପଟି, ରବର ବ୍ୟାଣ୍ଡ, ଚାଉଳ ବା ଧାନ, ବାଲି, ସେଲୋଟେପ୍, ପେନ୍‌ସିଲ

*କିପରି କରିବ*

ଏସବୁ ଜିନିଷରୁ ବିଭିନ୍ନ ପ୍ରକାରର ବାଜା ତିଆରି ହୋଇପାରିବ ।



*ଝୁମୁକା*

ଓମ୍‌ଫ୍ରେଡ ଦହି ମିଳୁଥିବା ଦୁଇଟି ଏକା ଆକାରର କପ୍ ନିଅ । ଗୋଟିକରେ କିଛି ଚାଉଳ ବା ଧାନ ରଖ । ତା'ଉପରେ ଆଉ ଡବାଟି ଓଲଟାଇ ରଖି ସେଲୋଟେପ୍ ଦେଇ ଯୋଡ଼ିଦିଅ । ଏବେ ତାକୁ ହଲାଇଲେ ସେଥିରୁ ଶବ୍ଦ ବାହାରୁଥିବ । ଭିତରେ ଚାଉଳର ପରିମାଣ କମ୍ ବେଶୀ କରି ଶବ୍ଦ ବଦଳାଇ ହେବ ।



*ଗିଟାର*

ଗୋଟିଏ ଖାଲି ପ୍ଲାଷ୍ଟିକ ଡବା ନିଅ । ଲୁଗା ବା ମିଠା ଆସୁଥିବା ମୋଟା ପଟାର ଡବା ବି କାମ କରିବ । ଏହାର ଖୋଳ କାଢ଼ିଦେଇ ତା' ଉପରେ ଗୋଟିଏ ରବର ବ୍ୟାଣ୍ଡ ଟାଣି କରି ଲଗାଇଦିଅ । ଏବେ ରବର ବ୍ୟାଣ୍ଡକୁ ନଖରେ ଟାଣି ଛାଡ଼ିଲେ ସେଥିରୁ ଶବ୍ଦ ବାହାରିବ ।

# ଗୁଣୁଗୁଣୁ ବାଜା

ଅଳିଆରୁ ଆମେ ଅନେକ ପ୍ରକାରର ବାଜା ତିଆରି କରିବା ଶିଖିଲେ। ଏବେ ସେହିଭଳି ଆଉ ଗୋଟିଏ ବାଜା ତିଆରି କରିବା।

### କ'ଣ ଦରକାର

ପୁରୁଣା ହ୍ୟାଙ୍ଗର, ରବର ବ୍ୟାଣ୍ଡ, ମୋଟା ସୂତା, ମୋଟା କାର୍ଡବୋର୍ଡ



### କିପରି କରିବ

ପୁରୁଣା ତାର ହ୍ୟାଙ୍ଗରଟିଏ ଆଣ। ଏହାର ହୁକ୍ ପାଖରୁ ଧରି ତଳପଟର ମଝିରୁ ଭିଡ଼ି ଦେଲେ ତାହା ଲମ୍ବିଯିବ ଓ ଠିକିରି ଆକାର ହୋଇଯିବ। ରବର ବ୍ୟାଣ୍ଡଗୁଡ଼ିକୁ ଭିଡ଼ି ଏହି ଠିକିରି ଉପରେ ଲଗାଇ ଦିଅ। ଗୋଟିଏ ଲମ୍ବା ଟାଣ ମୋଟା ସୂତା ହ୍ୟାଙ୍ଗରର ହୁକ୍‌ରେ ବାନ୍ଧିଦିଅ। ସୂତାର ଗୋଟିଏ ମୁଣ୍ଡକୁ ଧରି ହ୍ୟାଙ୍ଗରକୁ ପବନରେ ଘୂରାଇଲେ ଗୁଣୁଗୁଣୁ ଶବ୍ଦ ବାହାରିବ।



ମୋଟା କାର୍ଡବୋର୍ଡରେ ବି ଏହା କରିହେବ। ଖଣ୍ଡେ ଆୟତାକାର କାର୍ଡବୋର୍ଡ ନିଅ। ଏହାର ଚାରିକଡ଼ରୁ ଦୁଇ ସେ.ମି. ଲେଖାଏଁ ଛାଡ଼ି ଗାର ପକାଅ ଓ ସେ ଗାର ଉପରେ କାଟିଦିଅ ଯେପରି ମଝି ଖଣ୍ଡଟି ବାହାରି ଯିବ। ଏହାର ଉପର ପଟେ ଗୋଟିଏ ଛୋଟ କଣା କରି ମୋଟା ସୂତା ବାନ୍ଧିଦିଅ। ଏବେ ଏହା ଉପରେ ଆଗ ଭଳି ରବର ବ୍ୟାଣ୍ଡ ଚଢ଼ାଇ ଦିଅ ଓ ସୂତାକୁ ଧରି ଘୂରାଅ।

ଏହି ଗୁଣୁଗୁଣୁ ଶବ୍ଦ ରବରବ୍ୟାଣ୍ଡ କେତେ ଭିଡ଼ି ହୋଇ ରହିଛି, ଛାଞ୍ଚ ଉପରେ କେମିତି ଲାଗିଛି ଏବଂ ବୁଲାଇବାର ଜୋର୍ ଉପରେ ନିର୍ଭର କରେ।

# ଚକ୍ରି

ଆମେ କେତେ ପ୍ରକାରର ଚକ୍ରି କରି ଘୁରାଇଥିବା । ସୋଡ଼ା ଠିପି, କାର୍ଡବୋର୍ଡ, ରବର ସିଟ୍ ଆଦିରୁ ଏହାକୁ ତିଆରି କରିଥିବା । କିନ୍ତୁ ଆମେ ଏଇଠି ଗୋଟିଏ ଚକ୍ରି ତିଆରି କରିବା ତାହା ପୁଣି ଗୁଣୁ ଗୁଣୁ ହୋଇ ଶବ୍ଦ କରିବ ।

*କ'ଣ ଦରକାର*

କାର୍ଡବୋର୍ଡ, କଇଁଚି, ସୂତା, କାଗଜ, ମୋଟା ବହି, ଟେବୁଲ

*କିପରି କରିବ*

ଖଣ୍ଡେ କାର୍ଡବୋର୍ଡରେ ପ୍ରାୟ ୭ ସେ.ମି. ବ୍ୟାସର ଗୋଟିଏ ଗୋଲ କର । ଚିତ୍ରରେ ଦେଖାଗଲା ଭଳି ଏହାକୁ କୁଞ୍ଚୁକୁଞ୍ଚିଆ କର ଓ ଏହି ଗାର ଉପରେ କାଟିଦିଅ । ମନେରଖ ଯେପରି ଏହି ଦାନ୍ତ ସବୁ ଏକା ଦିଗକୁ ହିଁ ରହିବେ । କେନ୍ଦ୍ରଠାରୁ ୧ ସେ.ମି. ଛାଡ଼ି ଦୁଇଟି ଛୋଟ କଣା କର ।





ଗୋଟିଏ କଣାରେ ସୂତାର ଗୋଟିଏ ମୁଣ୍ଡ ପୂରାଇ ତାକୁ ଆର କଣା ପଟେ ବାହାର କର ଓ ଦୁଇ ମୁଣ୍ଡକୁ ଯୋଡ଼ିଦିଅ ଯେପରି ତାହା ଗୋଲ ହୋଇଯିବ ଓ ଚକ୍ରିଟି ତା' ଭିତରେ ରହିବ । ଏବେ ସୂତାର ଦୁଇ ମୁଣ୍ଡରେ ଦୁଇ ହାତର ବିଶିଆଙ୍ଗୁଠି ପୂରାଅ ଓ ଜୋର ଜୋର ଘୁରାଅ । ସୂତାଟି ଗୁଡ଼ାଇ ହୋଇଯିବ । ଭିଡ଼ିଦେଲେ ଜୋରରେ ଘୂରିବ ।

ଟେବୁଲ ଧାରରେ ଅଳ୍ପ ବାହାରକୁ ବାହାର କରି ଗୋଟିଏ କାଗଜ ରଖ ଏବଂ ଏହା ଉପରେ ମୋଟା ବହିଟିକୁ ମଡ଼ାଇ ଦିଅ ଯେପରି କାଗଜଟି ଖସିଯିବ ନାହିଁ । ଏବେ ସୂତାର ଦୁଇ ମୁଣ୍ଡକୁ ଦୁଇ ହାତ ଆଙ୍ଗୁଳିରେ ଧରି ଚକ୍ରିଟିକୁ ଘୁରାଅ । ଚକ୍ରିଟି ଘୁରୁଥିବା ଅବସ୍ଥାରେ ବାହାରକୁ ବାହାରିଥିବା କାଗଜ ଧାରକୁ ଛୁଆଁଇଦିଅ । କ'ଣ ହେଲା ?

# ସରଳ ବର୍ଷାମାପକ

ବର୍ଷାଦିନେ ଶୁଣିଥିବା ଏତେ ମିଲିମିଟର ବର୍ଷା ହେଲା ବା ଭୂଗୋଳରେ ପଢ଼ିଥିବା କୌଣସି ଜାଗାର ହାରାହାରି ବର୍ଷାର ପରିମାଣ ଏତେ ମିଲିମିଟର। ଏସବୁ ମାପିବା ପାଇଁ ବର୍ଷାମାପକ ଯନ୍ତ୍ର ବ୍ୟବହାର କରାଯାଏ। ଆମେ ବି ସେହିଭଳି ଗୋଟିଏ ବର୍ଷାମାପକ ତିଆରି କରିପାରିବା।

*କ'ଣ ଦରକାର :*

ପ୍ଲାଷ୍ଟିକ୍ ପାଣି ବୋତଲ, ଛୁରୀ, ସ୍କେଲ୍, ସେଲୋଟେପ୍

*କିପରି କରିବ*

ପ୍ଲାଷ୍ଟିକ ପାଣି ବୋତଲର ତଳ ସିଲିଣ୍ଡର ଆକାରର ଅଂଶକୁ ଛୁରୀରେ କାଟିଦିଅ। ଏହାର ଉପର ଅଂଶ କାହାଳୀ ଭାବରେ କାମ ଦେବ। କାହାଳୀକୁ କଟା ବୋତଲ ଭିତରକୁ ଓଲଟା ମୁହଁ କରି ରଖ ଓ ସେଲୋଟେପ୍ ଦେଇ ଯୋଡ଼ିଦିଅ। ବୋତଲଟି ବେଶ୍ ହାଲୁକା। ତେଣୁ ତାହାରେ କେବଳ ମାଟି ଉପରେ ରଖିଲେ ପଡ଼ିଯିବ। ତେଣୁ ମାଟିରେ ଅଳ୍ପ ଗାତକରି ସିଧା ଉପର ମୁହାଁକରି ପୋତିଦିଅ।

ବୋତଲ ଚାରିପାଖରେ ଇଟା ରଖି ମଧ୍ୟ ବୋତଲକୁ ସିଧା ରଖିହେବ। ବୋତଲକୁ ଖୋଲା ଜାଗାରେ ରଖିଲେ ବର୍ଷା ହେଲେ କିଛି ପାଣି ବୋତଲ ଭିତରେ ଜମା ହେବ। ଏହି ପାଣିକୁ ସ୍କେଲ ସାହାଯ୍ୟରେ ମାପିଲେ ବର୍ଷାର ପରିମାଣ ଜାଣିହେବ।



# ନାଚି ନାଚି ଖସିବା

ଖୁଣ୍ଟର ମାଙ୍କଡ଼ଟିଏ ଚଢୁଛି ଖସୁଛି - ଏଭଳି ଗଣିତ ପ୍ରଶ୍ନ କରିଥିବା। ମେଳାରେ ଗୋଟିଏ କଣ୍ଢେଇ ମିଳେ ଦେଖିଥିବା। ଏଥିରେ ଗୋଟିଏ ତାରରେ କଣ୍ଢେଇଟିଏ ଲାଗିଥାଏ। ତାକୁ ଉପରକୁ ନେଇ ଛାଡ଼ିଦେଲେ ତାହା ନାଚି ନାଚି ତଳକୁ ଖସେ। ଆମେ ସେହିଭଳି ଗୋଟିଏ ଖେଳନା ତିଆରି କରିବା।

### *କ'ଣ ଦରକାର*

ଲମ୍ବା ନଟ୍, ୱାସର, କାଠ ପଟା

### *କିପରି କରିବ*



୮-୧୦ ମିଲିମିଟର ମୋଟା ଓ ୨୦ ସେ.ମି. ଲମ୍ବା ଗୋଟିଏ ବୋଲ୍ଟ୍ ଆଣ। ଏଭଳି ଲମ୍ବା ବୋଲ୍ଟ୍ ହାର୍ଡୱେର୍ ଦୋକାନରେ ମିଳିବ। କିଛି ଷ୍ଟିଲ ୱାସର ନିଅ। ୱାସରର କଣା ବୋଲ୍ଟ୍‌ର ମୋଟେଇ ଠାରୁ ଅଳ୍ପ ବଡ଼ ହୋଇଥିବା ଦରକାର।

ନଟ୍‌ର ମୁଣ୍ଡିଟି କାଠ ପଟା ଉପରେ ରଖି ହାତୁଡ଼ିରେ ପିଟିଦେଲେ ତାହା ପଟାରେ ପଶିଯିବ ଓ ଠିଆ ହୋଇ ରହିବ। ସେଥିରେ ୱାସରଗୁଡ଼ିକ ଉପରୁ ଗଳାଅ। କ'ଣ ହେଲା ? ସେଗୁଡ଼ିକ ନାଚି ନାଚି ତଳକୁ ଖସିବ।

ବିଭିନ୍ନ ଆକାରର ୱାସର ନେଇ ଦେଖ କେଉଁ ପ୍ରକାର ୱାସରରେ ସବୁଠାରୁ ଭଲ ଖସୁଛି।

# କମ୍ପୋଷ୍ଟ

କମ୍ପୋଷ୍ଟ ହେଉଛି ଜୈବପଦାର୍ଥ ଅଳିଆର ସଢ଼ା ଅଂଶ। ଏହା ମୁଖ୍ୟତଃ ପତ୍ର, ଅନାବନା ଘାସ, ଡାଳ ଆଦି ବଗିଚାର ଅଳିଆ ଏବଂ ପରିବା ଓ ଫଳଚୋପା ଆଦି ରୋଷେଇ ଘର ଅଳିଆରୁ ଆସିଥାଏ। କମ୍ପୋଷ୍ଟ ତିଆରିର ବାଟ ବହୁତ ସହଜ। କମ୍ପୋଷ୍ଟ ପ୍ରକୃତରେ ଅଣୁଜୀବମାନଙ୍କୁ ସକ୍ରିୟ କରାଇଥାଏ। ଫଳରେ ମାଟି ଉର୍ବରତା ବଢ଼ିଥାଏ।

## କ'ଣ ଦରକାର

ନଡ଼ା, ଶୁଖିଲା ପତ୍ର, ଅମଳ ପରର ଅଳିଆ, ତୁଳା, ଫଳଚୋପା, ଗୋବର, କଞ୍ଚାପତ୍ର, ଜଳଜ ଉଦ୍ଭିଦ

## କିପରି କରିବ

କମ୍ପୋଷ୍ଟ କରିବା ପାଇଁ ପ୍ରଥମେ ଗୋଟିଏ ଜାଗା ବାଛିବା ଦରକାର। ଜାଗାଟି ଅଧା ଛାଇ ଅଧା ଖରା ରହୁଥିବ ଏବଂ ନିଗିଡ଼ା ହୋଇଥିବ। ଏହି ଜାଗାକୁ ସିଧା ସୂର୍ଯ୍ୟକିରଣ, ପ୍ରବଳ ବର୍ଷା ଓ ପାଣି ଜମା ହେବାରୁ ରକ୍ଷା କରିବାକୁ ପଡ଼ିବ।

କମ୍ପୋଷ୍ଟ ଦୁଇ ପ୍ରକାରରେ କରାଯାଇପାରେ।

କ. ଖାଡ କମ୍ପୋଷ୍ଟ: ଗାତର ଗଭୀରତା ପ୍ରାୟ ୧ ମିଟର ହେବା ସହ ମୁହଁଟି ୧.୫ ମିଟରରୁ ୧.୮ ମିଟର ବର୍ଗାକାର ହେବା ଉଚିତ। ଏହା ଶୁଖିଲା ଅଞ୍ଚଳ ତଥା ଶୁଖିଲା ଋତୁ ପାଇଁ ଭଲ। ଏଥିପାଇଁ ଗଦା କମ୍ପୋଷ୍ଟ (ତଳେ ଦେଖ) ଠାରୁ ଅଧିକ ପରିଶ୍ରମ ଦରକାର।

ଖ. ଗଦା କମ୍ପୋଷ୍ଟ: ଏହା ୧.୫ ମିଟରରୁ ୧.୮ ମିଟରର ବର୍ଗାକାର ଅଞ୍ଚଳରେ ୧.୫ ମିଟର ଉଚ୍ଚ ଯାଏଁ କରାଯାଇଥାଏ। ସୁବିଧା ପାଇଁ ଚାରିପଟେ ବାଉଁଶର ଛାଞ୍ଚ ଦିଆଯାଇଥାଏ। ଏହା ଓଦା ଅଞ୍ଚଳ ଓ ବର୍ଷାଋତୁ ପାଇଁ ଭଲ। ପିଲାଙ୍କୁ ନେଇ କାମ କରିବା ପାଇଁ ମଧ୍ୟ ଏହା ଉପଯୁକ୍ତ।

ଉଭୟ ପ୍ରକାରର କମ୍ପୋଷ୍ଟ କରିବା ପାଇଁ ଭଲ ଭାବରେ ପାଣି ନିଗିଡ଼ିବା ଦରକାର। ଏଥିପାଇଁ ତଳେ ଇଟା ବା ବାଉଁଶ ଦେଲେ ଭଲରେ ପାଣି ନିଗିଡ଼ିଯାଏ।

କମ୍ପୋଷ୍ଟରେ ବିଭିନ୍ନ ଜିନିଷକୁ ସ୍ତର ସ୍ତର କରି ରଖାଯାଏ। ପ୍ରଥମେ ନଡ଼ା, ଶୁଖିଲା ପତ୍ର, ଅମଳ ପରର ଅଳିଆ, ତୁଳା, ଫଳଚୋପା, ଭଳି ଶୁଖିଲା ଜିନିଷର ଗୋଟିଏ ସ୍ତର କର। ଏଗୁଡ଼ିକରେ ଅଙ୍ଗାରକ ଥାଏ। ଜୈବିକ ଅଳିଆକୁ ବିଘଟନ କରୁଥିବା ଅଣୁଜୀବଙ୍କ ପାଇଁ ଏହା ଭଲ ଖାଦ୍ୟ। ଗୋବର ପାଣି ଦେଇ ତାକୁ ଓଦା କର। ତା'ଉପରକୁ ଗୋବର, କଞ୍ଚାପତ୍ର, ଜଳଜ ଉଦ୍ଭିଦ ଭଳି କଞ୍ଚା ଜିନିଷର ଗୋଟିଏ ସ୍ତର କର।



ଏସବୁ ଜିନିଷରେ ଯଥେଷ୍ଟ ପରିମାଣରେ ଯବକ୍ଷାରଜାନ ଥାଏ । ଏହା ମଧ୍ୟ ଅଣୁଜୀବଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ । ଏହାପରେ ମାଟିର ଗୋଟିଏ ଆସ୍ତରଣ ଦିଅ । ଆବଶ୍ୟକ ହେଉଥିବା ଉଚ୍ଚତା ହେବା ଯାଏଁ ଏହି କ୍ରମରେ ସ୍ତର ସ୍ତର କରି ରଖ ।

ପ୍ରାୟ ୨ ମିଟରର ଲମ୍ବା ଖଣ୍ଡେ ବାଉଁଶକୁ ଦୁଇ ଫାଳ କରିଦିଅ । ବଡା ଦୁଇ ଖଣ୍ଡର ଭିତରୁ ଗଣ୍ଠିଗୁଡ଼ିକ ବାହାର କରିଦିଅ । ଗଣ୍ଠିସଫା ବଡା ଦୁଇ ଖଣ୍ଡକୁ ପୁଣି ଯୋଡ଼ିଦେଇ ସରୁ ଲୁହା ତାର ଗୁଡ଼ାଇ ବାନ୍ଧିଦିଅ । ଏବେ ୨ ମିଟରର ଲମ୍ବାର ବାଉଁଶ ନଳୀଟିଏ ମିଳିବ । ଏହି ନଳୀକୁ କମ୍ପୋଷ୍ଟ ଗଦାର ମଝିରେ ଠିଆ କରି ପୋତିଦିଅ । ଅଧିକ ତାପ ଓ ମିଥେନ ବାଷ୍ପ ବାହାରିଯିବା ପାଇଁ ଏହି ନଳୀ ବାଟ ଯୋଗାଇବ । କମ୍ପୋଷ୍ଟ ଖାତ/ଗଦାକୁ ଶୁଖିଯିବାରୁ ବା ଅଧିକ ବର୍ଷାରୁ ରକ୍ଷା କରିବା ପାଇଁ ଏହାର ଉପର ପୃଷ୍ଠକୁ କଦଳୀ ପତ୍ର ବା ଝୋଟ ଅଖାରେ ଢାଙ୍କି ଦିଅ ।

ମାସେ ପରେ କମ୍ପୋଷ୍ଟକୁ ଉପର ତଳ କରି ଘାଣ୍ଟି ଦେଇ ଓଦା ରଖିବା ପାଇଁ ପାଣି ଛିଞ୍ଚି ଦିଅ ଏବଂ ମାଟି ଘୋଡ଼େଇ ଦିଅ । କମ୍ପୋଷ୍ଟ ପୂରା ବ୍ୟବହାର ଉପଯୋଗୀ ହେବା ପାଇଁ ପ୍ରାୟ ଅଢ଼େଇରୁ ତିନିମାସ ସମୟ ଲାଗେ । କମ୍ପୋଷ୍ଟ ପୂରା ହେଲାଣି କି ନାହିଁ ଜାଣିବା ପାଇଁ କମ୍ପୋଷ୍ଟ ଖାତ ଭିତରେ ହାତ ପୂରାଇ ଦେଖ ତାହା ଆଉ ଉଷୁମ ଲାଗିବ ନାହିଁ ।



ପାକଳ କମ୍ପୋଷ୍ଟରୁ ସଢ଼ା ବା ଦୁର୍ଗନ୍ଧ ବାହାରୁ ନଥିବ । ମୂଳ ଜିନିଷଗୁଡ଼ିକ ମୂଳ ଅବସ୍ଥାରେ ଆଉ ଦେଖାଯାଉ ନଥିବ । କମ୍ପୋଷ୍ଟର ରଙ୍ଗ ଗାଢ଼ ଧୂସର କଳା ହେବା ସହ ତାହା ଅଠାଳିଆ ହୋଇନଥିବ ।

ମଞ୍ଜିବୁଣିବା ବା ଚାରା ଲଗାଇବା ପୂର୍ବରୁ ଏହାକୁ ମାଟିରେ ମିଶାଇଦିଅ । କମ୍ପୋଷ୍ଟକୁ ଜମା କରି ରଖିବାକୁ ଚାହୁଁଥିଲେ ଏହାକୁ ବଗିଚାର ଗୋଟିଏ କୋଣରେ ଅଖା ଘୋଡେଇ ଗଦାକରି ରଖିବା ଦରକାର । ବର୍ଷାଦିନିଆ ଚାଷରେ ମଧ୍ୟ ଅଳ୍ପ ପରିମାଣର କମ୍ପୋଷ୍ଟ ବ୍ୟବହାର କରିବା ଆବଶ୍ୟକ ।

ଭଲ କମ୍ପୋଷ୍ଟ ତିଆରି କରିବା ପାଇଁ ହେଲେ କିଛି ସାବଧାନ ହେବା ଜରୁରୀ । କମ୍ପୋଷ୍ଟ ଖାତକୁ ସିଧା ସୂର୍ଯ୍ୟ କିରଣ ବା ବର୍ଷା ପାଣି ପଡ଼ିବାକୁ ଦିଅନାହିଁ । ଖାତଟିକୁ ପାଣି ଜମା ହେବା ଜାଗାଠୁ ଦୂରରେ ରଖିବା ଦରକାର । କିନ୍ତୁ ଏହାର ଆର୍ଦ୍ରତା ଶତକଡ଼ା ୬୦-୭୦ ଭାଗ ରହିବା ଜରୁରୀ । ସ୍ତର ସ୍ତର କରିବା ପୂର୍ବରୁ କମ୍ପୋଷ୍ଟର ଜିନିଷଗୁଡ଼ିକୁ ଛୋଟ ଛୋଟ ଖଣ୍ଡ କରିବା ଆବଶ୍ୟକ । ପ୍ରତ୍ୟେକ ସ୍ତରରେ ଆଞ୍ଜୁଳାଏ ଲେଖାଏଁ ପାଉଁଶ ଦିଆଯାଇ ପାରିବ ।

## ଜିଆ ବିଷୟରେ କିଛି କଥା

ଜିଆ ଓଦା, ଥଣ୍ଡା ଓ ଅନ୍ଧାରରେ ରହିବାକୁ ଭଲ ପାଏ । ଅନେକ ପ୍ରକାରର ଜିଆ ଅଛନ୍ତି । କିନ୍ତୁ ସମସ୍ତେ କାନ୍ଥ ଘେରା ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହିବାକୁ ପସନ୍ଦ କରନ୍ତି ନାହିଁ । କେବଳ ଦୁଇ ଜାତିର ଜିଆ କୌଣସି ଡବା ବା ବାକ୍ସରେ ସହଜରେ ବଢ଼ିଥାନ୍ତି । ସେଗୁଡ଼ିକ ହେଲେ *ଲୁମ୍ବ୍ରିକସ୍ ରୁବେଲସ୍* ଓ *ଏଇସେନିଆ ଫୋଇଟିଡା* ।

ଜିଆର ଆଖି, କାନ ନଥାଏ । କିନ୍ତୁ ସେ କମ୍ପନ ଓ ଆଲୁଅ ପ୍ରତି ସମ୍ବେଦନଶୀଳ । ଜିଆ ବେଶ୍ ଅଧିକ ଉତ୍ତାପ ସହିପାରେ । କିନ୍ତୁ ୧୫ରୁ ୨୫ ଡିଗ୍ରୀ ସେ. ରେ ସେ ବହୁତ ଚଳଚଞ୍ଚଳ ରହିଥାଏ । ଜିଆ ପାଇଁ ଅଧିକ ଆର୍ଦ୍ରତା (ପ୍ରାୟ ୬୦ - ୭୦ ଶତାଂଶ) ସହ ଅମ୍ଳଜାନ ଦରକାର ଏବଂ ଯଥେଷ୍ଟ ଖାଦ୍ୟ ଦରକାର । ସାଧାରଣତଃ ସେମାନେ ୨୪ ଘଣ୍ଟାରେ ନିଜ ଓଜନର ଅଧା ଓଜନର ଖାଦ୍ୟ ଖାଇଥାନ୍ତି । ଜିଆ ନିରପେକ୍ଷ ବା ଅଳ୍ପ ଅମ୍ଳୀୟ ମାଟିରେ ରହିବାକୁ ପସନ୍ଦ କରିଥାଏ । ତଥାପି ଅଧିକ ଅମ୍ଳୀୟ ବା କ୍ଷାରୀୟ ମାଟିରେ ମଧ୍ୟ ରହିପାରେ ।

ଶାକାହାରୀ ଖାଦ୍ୟ ଜିଆର ପସନ୍ଦ । କିନ୍ତୁ ଅଣ୍ଡାଖୋଳକୁ ଗୁଣ୍ଡ କରି ମଧ୍ୟ ଦିଆଯାଇପାରେ । ଜିଆର ପ୍ରଥମ ପସନ୍ଦ ଖାଦ୍ୟ ହେଉଛି ପରିବା ଚୋପା, ଗଛପତ୍ର, ଚା'ପତ୍ର, ଫଳଶସ, ଚୂନ୍ଙ୍କୁରା କାଗଜ ଓ କାର୍ଡବୋର୍ଡ ଆଦି । ମାଂସ, ମାଛ, କ୍ଷୀରଜାତ ପଦାର୍ଥ, ତେଲ ଓ ଚର୍ବି ଜାତୀୟ ପଦାର୍ଥକୁ ଜିଆ ପସନ୍ଦ କରେ ନାହିଁ । ସାବୁନ, ରଙ୍ଗ, କୀଟନାଶକ ପରି ଜିନିଷ ମିଶିଥିବା ଖାଦ୍ୟକୁ ସେ ଏଡ଼ାଇ ଯାଏ ।

# ଆଉ ଏକ କମ୍ପୋଷ୍ଟ

ମାଟିର ଉର୍ବରତା ବଢ଼ାଇବାରେ ଜିଆ ଏବଂ ଅପଘଟକ ଅଣୁଜୀବମାନଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ। ଜିଆ ମାଟିରେ ପଡ଼ିଥିବା ପତ୍ର, ଫୁଲ ଓ ଅନ୍ୟ ସବୁଜ ଜିନିଷକୁ କାଟି ଛୋଟ ଛୋଟ ଖଣ୍ଡ କରେ। ତା'ପରେ ଅଣୁଜୀବମାନେ ସେଗୁଡ଼ିକୁ ଭାଙ୍ଗି ସରଳ ଅଣୁ ରୂପରେ ମାଟିରେ ମିଶାନ୍ତି। ଏହାକୁ କମ୍ପୋଷ୍ଟ କୁହାଯାଏ। ନଡ଼ା, ଡାଳ, ଝଡ଼ାପତ୍ର, କାଠଖଣ୍ଡ ଓ କରଡଗୁଣ୍ଡ ଆଦି ଗଛର ଶୁଖିଲା ଓ ମଲା ଅଂଶ କମ୍ପୋଷ୍ଟର ମୁଖ୍ୟ ଉପାଦାନ ହୁଏ। ଏସବୁରେ ଅଙ୍ଗାର ବେଶୀ ପରିମାଣରେ ଥାଏ। ସେହିପରି ପରିବା ଚୋପା, ସବୁଜ ପତ୍ର, ଫୁଲ, ଚା' ପତି ଆଦି ସବୁଜ ଖାଦ୍ୟରେ କିଛି ପରିମାଣର ଯବକ୍ଷାରଜାନ ଥାଏ। ଜିଆ ନଥିଲେ ବି ଏସବୁ ପଚାଇକରି ସହଜରେ କମ୍ପୋଷ୍ଟ କରିହେବ।

*କିପରି କରିବା*

ବଗିଚାର ଗୋଟିଏ କୋଣରେ ମାଟିରେ ୧ ମିଟର ଲମ୍ବା, ଚଉଡ଼ା ଓ ଗଭୀରର ଗୋଟିଏ ଗାତ ଖୋଳ। ମାଟିରେ ଗାତ ନଖୋଳି ଗୋଟିଏ ବଡ଼ କାଠ ପେଟି ବା ତାର ଜାଲିରେ ଗୋଟିଏ ବାକ୍ସ କରି ସେଥିରେ ମଧ୍ୟ କମ୍ପୋଷ୍ଟ ତିଆରି କରିହେବ। ଏଥିରେ ବିଭିନ୍ନ ଜିନିଷ ସ୍ତର ସ୍ତର କରି ରଖିବାକୁ ପଡ଼ିବ।



ଗାତ ବା ବାକ୍ସର ସବା ତଳେ ଡାଳ ଓ ଅନ୍ୟ ଶୁଖିଲା ଜିନିଷ ଦିଅ। ଏହା ଉପରକୁ ସବୁଜ ଜିନିଷର ସ୍ତରଟିଏ କର। ଏହିପରି ସ୍ତର ସ୍ତର କରି ଜିନିଷଗୁଡ଼ିକୁ ରଖିଦିଅ। ପ୍ରତ୍ୟେକ ସ୍ତରରେ ଅଳ୍ପ ପାଣି ଛିଞ୍ଚିବା ଜରୁରୀ।

ମାଟିରେ ଗାତ ଖୋଳି କମ୍ପୋଷ୍ଟ କରୁଥିଲେ ସେଥିରେ ଜିଆ ଛାଡ଼ି ନଥିଲେ ବି କିଛିଦିନ ପରେ ଆପେ ଆପେ ଜିଆ ଆସିଯିବେ। କିନ୍ତୁ କାଠ ପେଟି ବା ତାର ଜାଲିର ବାକ୍ସରେ ଜିଆ ଆସିବାର ସମ୍ଭାବନା କମ୍।

କିନ୍ତୁ ସେଥିରେ ବି କମ୍ପୋଷ୍ଟ ହୋଇପାରିବ । କିଛିଦିନ ଛଡ଼ାରେ ନିୟମିତ ଏହି କମ୍ପୋଷ୍ଟ ଗଦାକୁ ଓଲଟାଇବା ଦରକାର । ଫଳରେ ତା'ଭିତରେ ଠିକ ଭାବରେ ପବନ ଯିବାଆସିବା କରିପାରିବ ।

*କମ୍ପୋଷ୍ଟ ହୋଇ ସାରିଲା ବୋଲି କିପରି ଜାଣିବା ?*

ପୂରା କମ୍ପୋଷ୍ଟ ତିଆରି ପାଇଁ ଗଦାର ଆକାର ଅନୁସାରେ ୬ ମାସରୁ ୨ ବର୍ଷ ସମୟ ଲାଗିଥାଏ । ଗଦାଟିରେ କମ୍ପୋଷ୍ଟ ହେବା ପ୍ରକ୍ରିୟା ସରିଗଲେ ସେଥିରେ ଥିବା ବିଭିନ୍ନ ଅଳିଆ ମିଶି ଗାଢ଼ ରଙ୍ଗର ମାଟି ଭଳି ଦେଖାଯାଏ ଏବଂ ଏହି ମାଟିର ଗୋଟିଏ ମିଠା, କାଠୁଆ ଗନ୍ଧ ଥାଏ । ହାତରେ ଚାପିଲେ କମ୍ପୋଷ୍ଟ ମୁଣ୍ଡା ସହଜରେ ଗୁଣ୍ଡ ହୋଇଯାଏ ।

# ଜିଆ ଚାଷ

ଜିଆ ଜୈବିକ ପଦାର୍ଥକୁ ବିପଟନ କରି ଉଦ୍ଭିଦ ପାଇଁ ଖାଦ୍ୟ ସୃଷ୍ଟି କରିଥାଏ । ବିପଟିତ ଜିନିଷ ଗୋଟିଏ ଭଲ ଖତ । ଏହାକୁ ଭର୍ମିକମ୍ପୋଷ୍ଟ ବା ଜିଆକମ୍ପୋଷ୍ଟ କୁହାଯାଏ । ଜିଆକମ୍ପୋଷ୍ଟ ଗଛ ପାଇଁ ଏକ ପୂର୍ଣ୍ଣ ଖାଦ୍ୟ ଯୋଗାଏ ଏବଂ ଗଛକୁ କୀଟ ଓ ରୋଗରୁ ମଧ୍ୟ ରକ୍ଷା କରିଥାଏ । ମାଛ ଓ କୁକୁଡ଼ାର ଖାଦ୍ୟ ଭାବରେ ଏବଂ ଜିଆକମ୍ପୋଷ୍ଟ ଆରମ୍ଭ କରିବା ପାଇଁ ମଞ୍ଜି ଭାବରେ ମଧ୍ୟ ଜିଆ ବିକ୍ରି କରାଯାଇପାରେ । ଜିଆଙ୍କ ରହିବା ପାଇଁ ଉପଯୁକ୍ତ ବ୍ୟବସ୍ଥା କରିଦେଲେ ସେମାନେ ବହୁତ ଶୀଘ୍ର ବଢ଼ନ୍ତି । ଜିଆ ଖୁବ୍ କମ ଯତ୍ନରେ ବଞ୍ଚନ୍ତି ଏବଂ ଦୁର୍ଗନ୍ଧ ଆଦି ସୃଷ୍ଟି କରନ୍ତି ନାହିଁ ।

*କ'ଣ ଦରକାର*

କାଠ ବାକ୍ସ ବା ବଡ଼ ମାଟି ପାତ୍ର, ଖବର କାଗଜ, ଛୋଟ ପଥର, ଟୁକୁରା କାଗଜ ବା କତା, ନଡ଼ା, ଶୁଖିଲା ପତ୍ର, ଛୋଟ ଅଖା

*କିପରି କରିବ*

ଘର, ଗ୍ୟାରେଜ, ଗୁହାଳ ବା ବଗିଚାର ଗୋଟିଏ କୋଣରେ କାଠବାକ୍ସ, ମାଟିପାତ୍ର ବା ପ୍ଲାଷ୍ଟିକ ବାଲଟିରେ ସହଜରେ ଜିଆଚାଷ କରାଯାଇପାରେ । କିନ୍ତୁ ସବୁ ଦୃଷ୍ଟିରୁ ଦେଖିଲେ କାଠ ବାକ୍ସରେ ଜିଆଚାଷ କରିବା ଭଲ । ୫୦-୬୦ ସେ.ମି. ଲମ୍ବ ଓ ୭୦-୭୫ ସେ.ମି. ଚଉଡ଼ାର ଗୋଟିଏ କାଠ ବାକ୍ସ ନିଅ । ଏଥିରେ ଅନୁମାନ ମଝି ପର୍ଯ୍ୟନ୍ତ ପହଞ୍ଚି ପାରିବ । ବାକ୍ସର ତଳେ ୧୫ ସେ.ମି. ଛଡ଼ାରେ ୬-୭

ମି.ମି. ଆକାରର ୧୨-୧୫ଟି କଣା କର । ପ୍ଲାଷ୍ଟିକ ବାଲ୍‌ଟି ହୋଇଥିଲେ ପବନ ଚଳାଚଳ ପାଇଁ ଚାରି ପାଖରେ କଣା କରିବାକୁ ପଡ଼ିବ ।



କଣା ଉପରେ ୪-୫ଟି ଖବରକାଗଜ ଘୋଡ଼େଇ ଦିଅ ଏବଂ ୫-୬ ସେ.ମି. ଗଭୀରରେ ଛୋଟ ଛୋଟ ପଥର ଭର୍ତ୍ତି କର । ଏହି ପଥରଗୁଡ଼ିକୁ ପୂର୍ବରୁ ଭଲ ଭାବରେ ଧୋଇବା ଜରୁରୀ । ପଥର ସ୍ତର ଉପରେ ୩-୫ ସେ.ମି. ଗଭୀରର ମାଟିର ଗୋଟିଏ ସ୍ତରରେ ରଖ । କିଛି ପୁରୁଣା କମ୍ପୋଷ୍ଟକୁ ଚାଲିରେ ଛାଣି ମାଟିସ୍ତରରେ ମିଶାଇ ଦିଅ । ଟୁକୁରା କାଗଜ, କତା ବା ଚିରା କାର୍ଡବୋର୍ଡ ଆଦିକୁ ୨-୩ ଘଣ୍ଟା ଯାଏଁ ପାଣିରେ ବତୁରାଇବା ପରେ ଚିପୁଡ଼ି ଦେଇ ଏହି ବାକ୍ସ ଭିତରେ ୧୫-୨୦ ସେ.ମି. ଗଭୀରତା ଯାଏଁ ପକାଅ ।

ଜିଆଗୁଡ଼ିକୁ ଏହି ଓଦାସ୍ତରର ମଝିରେ ରଖିଦିଅ । ତା' ଉପରେ ନଡ଼ା ଓ ଶୁଖିଲା ପତ୍ରକୁ ଛୋଟ ଛୋଟ ଖଣ୍ଡରେ କାଟି ୩୦-୩୫ ସେ.ମି. ଯାଏଁ ରଖ । ପ୍ରତିଦିନ ଏହି ସ୍ତରର ୫-୬ ସେ.ମି. ଭିତରେ ଖାଦ୍ୟ ପଦାର୍ଥକୁ ପୋତିବା ଦରକାର । ବାକ୍ସର ଉପରେ ଓଦା ଝୋଟ/କନା ବା ଅଖାକୁ ଦୁଇ ପରସ୍ତ କରି ଘୋଡେଇଦିଅ ।

ଏବେ ବାକ୍ସଟି ପ୍ରସ୍ତୁତ ହୋଇଗଲା । ଏହାକୁ ଅନ୍ଧାରୁଆ, ଥଣ୍ଡା ଏବଂ ବିଶେଷ ଯିବାଆସିବା ନଥିବା କୋଣରେ ରଖ । ବାକ୍ସ ପଦାରେ ରହୁଥିଲେ ସୁବିଧା ହେଲେ ମୂଷା, ବିଲେଇ, ପକ୍ଷୀ ଆଦିଙ୍କଠୁ ରକ୍ଷା କରିବା ପାଇଁ ତାରଜାଲିର ଘୋଡ଼ଣୀ ବ୍ୟବହାର କରିପାର । ପ୍ରତିଦିନ କିଛି ପାଣି ଛିଞ୍ଚି ଝୋଟ ଅଖାକୁ ଓଦା କର ଏବଂ ରୋଷେଇଘର ଅଳିଆକୁ ନଡ଼ାସ୍ତରରେ ବିଭିନ୍ନ ସ୍ଥାନରେ ପୋତିଦିଅ ।

ସାତ ଆଠ ସପ୍ତାହ ପରେ ଉପର ସ୍ତରଟିର ବିଘଟନ ହୋଇଯାଏ ଏବଂ ତାହା ଧୂସର ଚା'ଗୁଣ୍ଡ ପରି ଦେଖାଯାଏ । ଏପରି ହେଲେ ୨-୩ ଦିନ ପାଇଁ ପାଣି ଛିଞ୍ଚିବା ଏବଂ ନୂଆ ଖାଦ୍ୟ ଦେବା ବନ୍ଦ କରିଦିଅ । ଏହା ପରେ ଉପରର ୧୨-୧୫ ସେ.ମି. ଗଭୀର ସ୍ତରର ଖତ କାଢ଼ିଆଣି ପୁଣି ଥରେ ନୂଆ ନଡ଼ା ଦିଅ । ପୂର୍ବ ପରି ଖାଦ୍ୟ ଓ ପାଣି ଦିଅ । ୩-୪ ଥର କାଢ଼ିବା ପରେ ନଡ଼ାସ୍ତର ଏବଂ କାଗଜ ସ୍ତରକୁ ବଦଳାଇବା ସହ ଅଧିକ ଥିବା ଜିଆକୁ କାଢ଼ିନିଅ ।

# ଘାସଥାକରେ ଚାଷ

ଜୈବିକ ଅଳିଆକୁ ବ୍ୟବହାର କରି ପରିବା/ଫୁଲ ବଗିଚା କରିବା ପାଇଁ ଘାସ ଥାକ ଗୋଟିଏ ମଜାଦାର ମାଧ୍ୟମ । ଅଳିଆ ସଂଚାଳନା ବିଷୟରେ ପିଲାମାନଙ୍କୁ ଜଣାଇବା ପାଇଁ ମଧ୍ୟ ଏହା ଗୋଟିଏ ଭଲ ବାଟ ।

*କ'ଣ ଦରକାର*

ଶୁଖିଲା ବା କଞ୍ଚା ଘାସ, ପତ୍ର, ଓଦା କାଗଜ, କାର୍ଡବୋର୍ଡ, ଛିଣ୍ଡା କନା

*କିପରି କରିବ*



ସାଧାରଣତଃ ଏହି ବ୍ୟବସ୍ଥାରେ ମାଟି ଉପରେ ୧୫ ସେ.ମି. ବା ତା'ଠାରୁ ଅଧିକ ମୋଟେଇରେ ଶୁଖିଲା ବା କଞ୍ଚା ଘାସ, ପତ୍ର ଆଦି ଜୈବିକ ଜିନିଷର ସ୍ତର କରାଯାଇଥାଏ ।

ଲମ୍ବା ଘାସ ଏବଂ ଅନାବନା ଘାସକୁ କାଟ । ପୁରା ଅଞ୍ଚଳକୁ ଭଲଭାବେ ଓଦା କର । କାରଣ ବର୍ଷା ପାଣି ହୁଏତ ଉପର ସ୍ତରକୁ ଭେଦି ମାଟିକୁ ଛୁଇଁ ନପାରେ । ଓଦା କାଗଜ, କାର୍ଡବୋର୍ଡ, ଛିଣ୍ଡା ଅଖା, ପୁରୁଣା କନା ଆଦି କେତେ ପରସ୍ତ କରି ତଳେ ପାରିଦିଅ ।

ସୀମାକୁ ଇଟା ବା କାଠଖଣ୍ଡ ଥୋଇ ଘେରାଇଦିଅ । ଏହା ବଗିଚାକୁ ଗୋଟିଏ ଆକୃତି ଦେବ । କଟାଘାସ, ବଗିଚା ଅଳିଆ ବା ଅନ୍ୟ ଘାସ ସବୁ ଏହି ଘେରା ଭିତରେ ପକାଅ । ଏହା ମଧ୍ୟ ବିଘଟିତ ହୋଇ ଖତ ହୋଇଯିବ । ଉପରେ ୧୫ ସେ.ମି. ଉଚ୍ଚତାରେ ଶୁଖିଲା ଘାସ ପକାଅ । ଧୀରେ ଧୀରେ ଏହା କମ୍ପୋଷ୍ଟ ହୋଇଯିବ । ୧୦-୧୫ ସେ.ମି.ର ସଢ଼ା ଖତ ମିଶାଇଲେ ଏହା ଉଦ୍ଭିଦ ପାଇଁ ସାଙ୍ଗେ ସାଙ୍ଗେ ଖାଦ୍ୟ ଯୋଗାଇଥାଏ । ସବା ଉପରେ ୧୦ ସେ.ମି.ର ନଡ଼ା ବା କୁଟାର ସ୍ତରଟିଏ କଲେ ତାହା ଉଦ୍‌ବାୟୀ ପୋଷକକୁ ପାଣିରେ ମିଶାଇ ରଖେ, ଗଛକୁ ସୁରକ୍ଷା ଦିଏ ତଥା ମାଟିର ତାପମାତ୍ରାକୁ ନିୟନ୍ତ୍ରଣ କରିଥାଏ ।

ସବୁବେଳେ ବର୍ଗାକାର ବଗିଚା କରିବାର କୌଣସି କାରଣ ନାହିଁ । ଛୋଟ ଆକାରରେ କଲାବେଳେ ପିଲାଙ୍କ ପାଇଁ ମଜାଦାର କରିବା ପାଇଁ ଏଭଳି ବଗିଚାକୁ ବିଭିନ୍ନ ଆକୃତି ଦେଇହେବ ।

# କିଏ ବେଶୀ ଶକ୍ତ

ଆଜବେଷ୍ଟସ୍ ଛପର ଘର ଦେଖିଥିବ। ସେ ଛାତ ଢେଉ ଢେଉକା ହୋଇଥାଏ। ଆଜବେଷ୍ଟସ୍ ଛାତ କେବେ ପୁରା ସମତଳ ହୋଇଥିବା ଦେଖିଛ କି? କାହିଁକି ହୋଇନଥାଏ। ଗୋଟିଏ ଛୋଟ ପରଖ କରି ଆମେ ଦେଖିପାରିବା ସମତଳ ଓ ଢେଉ ଭିତରୁ କିଏ ବେଶୀ ଶକ୍ତ।

## କ'ଣ ଦରକାର

ଦୁଇଟି ପୋଷ୍ଟକାର୍ଡ, ଚାରିଟି ଏକା ଆକାରର ଇଟା

## କିପରି କରିବ

ଗୋଟିଏ ପୋଷ୍ଟକାର୍ଡରେ ଏକ ସେ.ମି. ଛଡ଼ାରେ ଗାର ପକାଅ। ଗାର ଉପରେ ଭାଙ୍ଗିଦିଅ। ପ୍ରଥମ ଗାର ଉପରେ ସାମନାକୁ ଓ ତା' ପର ଗାର ଉପରେ ପଛକୁ। ଏହିପରି ଆଗ ଓ ପଛ କରି ପୁରା ପୋଷ୍ଟକାର୍ଡଟି ଭାଙ୍ଗିଦିଅ। ଏବେ ଏହା ଆଜବେଷ୍ଟସ୍ ଚାଦର ଭଳି ଢେଉ ଢେଉକା ହୋଇଯିବ।





ଏବେ ଚାରିଟି ଏକା ଆକାରର ଇଟା ନିଅ। ଇଟାଗୁଡ଼ିକୁ ଲମ୍ବ ଭାବରେ ଠିଆ କରି ରଖ। ଦୁଇଟି ଇଟା ଭିତରେ ଯେପରି ୮-୧୦ ସେ.ମି. ଫାଙ୍କ ରହେ। ପ୍ରଥମ ଇଟା ଦୁଇଟି ଉପରେ ଗୋଟିଏ ପୋଷ୍ଟକାର୍ଡ ଲମ୍ବ ଭାବରେ ରଖ ଓ ଆର ଇଟା ଦୁଇଟି ଉପରେ କୁଞ୍ଚୁକୁଞ୍ଚିଆ ପୋଷ୍ଟକାର୍ଡ ସେହିଭଳି ରଖ (ଢେଉଗୁଡ଼ିକ ଇଟାକୁ ଇଟା ଲମ୍ବିବ)।

ପୋଷ୍ଟକାର୍ଡ ଦୁଇଟି ଉପରେ ଏକା ଆକାରର ଛୋଟ ଗୋଡ଼ି ଦୁଇଟି ରଖ। କେଉଁ ପୋଷ୍ଟକାର୍ଡଟି ତଳକୁ ବଙ୍କାଇ ଗଲା? ଆଉ ଅଧିକ ଗୋଡ଼ି ରଖିଲେ କ'ଣ ହେଉଛି? କେଉଁ ଆକାର ଶକ୍ତ ବୋଲି ଆମେ ଜାଣିଲେ? ଏବେ ଜାଣିପାରୁଥିବ ଆଜବେଷ୍ଟସ୍ କାହିଁକି କୁଞ୍ଚୁକୁଞ୍ଚିଆ ହୋଇଥାଏ।

# କିଏ ବେଶୀ ଧରିବ

ଆମ ଚାରିପାଖରେ କେତେ ଆକାରର ପାତ୍ର ରହିଛି । ଅନେକ ଆକାରର ଗିଲାସ ମଧ୍ୟ ବଜାରରେ ମିଳୁଛି । ଗୋଲ, ଚାରିକୋଣିଆ, ତିନିକୋଣିଆ ଓ ଆହୁରି କେତେ କ'ଣ । ତେବେ ଏସବୁ ଆକାର ଭିତରୁ କେଉଁ ଆକାରରେ ସବୁଠାରୁ ଅଧିକ ପରିମାଣର ଜିନିଷ ଧରିବ ? ଗୋଟିଏ ମଜା କାମ କରି ଦେଖିବା ।

### *କ'ଣ ଦରକାର*

ତିନୋଟି ପୋଷ୍ଟକାର୍ଡ, ବାଲି, ସେଲୋଟେପ୍



### *କିପରି କରିବ*

ତିନୋଟି ପୁରୁଣା ପୋଷ୍ଟକାର୍ଡ ନିଅ । ପ୍ରଥମଟି ମୋଡ଼ି ତା'ର ଲମ୍ବ ପଟର ଦୁଇ ଧାରକୁ ଏକାଠି କର ଯେପରି ତାହା ଗୋଲ ନଳୀଟିଏ ହୋଇଯିବ । ଧାରକୁ ସେଲୋଟେପ୍ ଦେଇ ଯୋଡ଼ିଦିଅ । ବାକି ଦୁଇଟି ପୋଷ୍ଟକାର୍ଡକୁ ମଧ୍ୟ ଯୋଡ଼ି ନଳୀ ତିଆରି କର, କିନ୍ତୁ ଏଥର ନଳୀର ଆକାର ଚାରିକୋଣିଆ ଓ ତିନିକୋଣିଆ କର ।







ଏବେ ଆମ ପାଖରେ ତିନୋଟି ନଳୀ - ଗୋଲ, ଚାରିକୋଣିଆ ଓ ତିନିକୋଣିଆ ରହିଛି । ନଳୀତିନୋଟିକୁ ତଳେ ଠିଆ କରି ରଖ । ଛୋଟ ଚାମଚରେ ମାପି ମାପି ପ୍ରତି ନଳୀରେ ବାଲି ଭର୍ତ୍ତି କର । କେଉଁ ନଳୀରେ ଅଧିକ ବାଲି ଧରିଲା ?

# କେଉଁ ଆକାର ବେଶୀ

ବିଭିନ୍ନ ଆକାର ନେଇ ଦେଖିଲେ କେଉଁ ଆକାରରେ ବେଶୀ ଜିନିଷ ଧରିବ। ଖଣ୍ଡିଏ କାଗଜରୁ ଅଲଗା ଆକାର କରି ଦେଖିବା କେଉଁଥିରେ ବେଶୀ ଧରିବ।

*କ'ଣ ଦରକାର*

ଦୁଇଟି ପୋଷ୍ଟକାର୍ଡ, ସେଲୋଟେପ୍, ବାଲି

*କିପରି କରିବ*

ଦୁଇଟି ପୁରୁଣା ପୋଷ୍ଟକାର୍ଡ ନିଅ। ପ୍ରଥମଟି ମୋଡ଼ି ତା'ର ଲମ୍ବ ପଟର ଦୁଇ ଧାରକୁ ଏକାଠି କର ଯେପରି ତାହା ଲମ୍ବା ଗୋଲ ନଳୀଟିଏ ହୋଇଯିବ। ଧାରକୁ ସେଲୋଟେପ୍ ଦେଇ ଯୋଡ଼ିଦିଅ। ଏବେ ଆର ପୋଷ୍ଟକାର୍ଡଟି ନିଅ ଓ ଏହାକୁ ଓଉଡ଼ା ପଟରେ ଗୁଡ଼ାଇ ନଳୀ କର। ଏବେ ଆମକୁ ଦୁଇଟି ନଳୀ ମିଳିବ, ଗୋଟିଏ ସରୁ କିନ୍ତୁ ବେଶୀ ଲମ୍ବା ଆଉ ଆରଟି ମୋଟା କିନ୍ତୁ ଲମ୍ବା କମ୍।











ନଳୀ ଦୁଇଟିକୁ ଠିଆ କରି ରଖ ଓ ତା' ଭିତରେ ବାଲି ଭର୍ତ୍ତି କର। ଏବେ ସରୁ ନଳୀରେ ବାଲି ଭରିଦିଅ ତା'ର ବାହାରେ ମୋଟା ନଳୀଟିକୁ ଗଳାଇଦିଅ ଓ ସରୁ ନଳୀଟି ବାହାର କରିନିଅ। ସରୁ ନଳୀର ବାଲି ଏବେ ମୋଟା ନଳୀ ଭିତରେ ରହିବ। କେତେ ଯାଏଁ ଭର୍ତ୍ତି ହେଲା ? ଦୁଇ ପୋଷ୍ଟକାର୍ଡର ଲମ୍ବା ଓସାର ତ ସମାନ। ତେଣୁ ସେଥିରୁ ତିଆରି ଆକୃତି ଦୁଇଟିର ଆୟତନ ଅଲଗା ହେଲା କିପରି ?

# ବୋତଲ ଭେଳା

ପାଣିରେ କାଠର ଭେଳା ଘାସୁଥିବାର ଦେଖିଥିବ । ସେଥିରେ ଲୋକମାନେ ପିବା ଆସିବା ଓ ଜିନିଷପତ୍ର ନେବା ଆଣିବା କରନ୍ତି । ହାଲୁକା ହୋଇଥିବାରୁ ତାହା ପାଣିରେ ଭାସେ । ଆମେ ବି ବୋତଲରେ ସେହିଭଳି ଭେଳା ତିଆରି କରି ପାଣିରେ ଭସାଇ ପାରିବା ।

*କ'ଣ ଦରକାର*

ଏକା ଆକାରର ପ୍ଲାଷ୍ଟିକ ପାଣି ବୋତଲ, ସେଲୋଟେପ୍, ମୋଟା ସୁତା, ଥର୍ମୋକୋଲ୍ ବା ପତଳା ପଟା

*କିପରି କରିବ*

ଏକା ଆକାରର ପ୍ଲାଷ୍ଟିକ ପାଣି ବୋତଲ କେତେଗୁଡ଼ିଏ ନିଅ । ସେଗୁଡ଼ିକୁ ପ୍ରଥମେ ସେଲୋଟେପ୍ ଦେଇ ଯୋଡ଼ିଦିଅ । ଆଗ ଦୁଇଟି ଯୋଡ଼ । ସେଥିରେ ଆଉ ଗୋଟିଏ ଯୋଡ଼ । ଏହିପରି ଗୋଟିଏ ପରସ୍ପରେ ଯୋଡ଼ି ଚାଲ । ଯଦି ବେଶୀ ବୋତଲ ଥାଏ ତେବେ ସେଗୁଡ଼ିକୁ ଦୁଇଟି ଧାଡ଼ି କରି ଯୋଡ଼ି ବେଶୀ ଚଉଡ଼ା କରିପାରିବ । ସେଲୋଟେପ୍‌ରେ ଯୋଡ଼ିବା ପରେ ସେଗୁଡ଼ିକୁ ମୋଟା ସୁତାରେ ବାନ୍ଧିଦିଅ । ବୋତଲର ଗଦି ଉପରେ ଖଣ୍ଡେ ଥର୍ମୋକୋଲ୍ ବା ପତଳା ପଟା ରଖି ସୁତାରେ ବୋତଲ ସହ ବାନ୍ଧିଦିଅ । ଭେଳା ହୋଇଗଲା ।



ଏହାକୁ ପାଣିରେ ଭସାଇଲେ ତାହା ଭାସି ରହିବ । ଏହା ଉପରେ କିଛି ହାଲୁକା ଜିନିଷ ରଖି ପୋଖରୀରେ ଭସାଇ ଦେଲେ ତାହା ପବନର ସୁଅରେ ଭାସି ଭାସି ଯାଇ ଆର ପଟେ ଲାଗିବ । ପରୀକ୍ଷା କରି ଦେଖ କେତେଟି ବୋତଲରେ କେତେ ଓଜନ ସମ୍ଭାଳି ହେଉଛି ।

ଏହିଭଳି ପଚାଶଟି ବୋତଲ ଯୋଡ଼ି ଭେଳା ତିଆରି କଲେ ଗୋଟିଏ ଛୋଟ ପିଲା ତା' ଉପରେ ବସି ଯାଇପାରିବ ।

# ବୋତଲର ସୀମାଚିହ୍ନଟ

ପାଣି ଭିତରେ ବେଳେ ବେଳେ ରାସ୍ତା ଚିହ୍ନଟ କରିବା ପାଇଁ ବା ସୀମା ଚିହ୍ନଟ କରିବା ପାଇଁ ବଡ଼ ବଡ଼ ଗୋଲକ ଭାସୁଥିବାର ଦେଖିଥିବ । ଦଳେ ଓଜନ ଥିବାରୁ ଏଗୁଡ଼ିକ କୁଆଡ଼େ ଭାସି ଚାଲିଯାଏ ନାହିଁ । କିନ୍ତୁ ସେଇ ଗୋଟିଏ ଜାଗାରେ ବୁଡ଼ୁଥାଏ ଓ ଉଠୁଥାଏ । ଆମେ ବି ବୋତଲରେ ସେହିଭଳି ଗୋଟିଏ ସୀମାଚିହ୍ନଟକାରୀ ତିଆରି କରିପାରିବା ।

*କ'ଣ ଦରକାର*

ପ୍ଲାଷ୍ଟିକ ପାଣି ବୋତଲ, ବାଲି ବା ଛୋଟ ଗୋଡ଼ି

*କିପରି କରିବ*

ଗୋଟିଏ ଖାଲି ପ୍ଲାଷ୍ଟିକ ପାଣି ବୋତଲ ନିଅ । ଏହା ଭିତରେ ପ୍ରାୟ ତିନି ସେ.ମି. ଯାଏଁ ବାଲି ବା ଛୋଟ ଗୋଡ଼ି ଭର୍ତ୍ତି କର । ଏବେ ଏହାର ତଳ ବେଶ୍ ଓଜନିଆ ହୋଇଯିବ । ଏହାକୁ ପାଣିରେ ଭସାଇଲେ ପ୍ରାୟ ଅଧା ଯାଏଁ ପାଣିରେ ବୁଡ଼ିରହିବ ଓ ବାକି ଅଧା ପାଣି ଉପରକୁ ରହିବ । ବୋତଲଟି ପାଣିରେ ଅଧାରୁ ଟିକିଏ ବେଶୀ ବୁଡ଼ିକରି ସିଧା ରହିବା ଦରକାର । ଏଥିପାଇଁ ବାଲି ବା ଗୋଡ଼ିର ପରିମାଣ କମ୍ ବା ବେଶୀ କରିବା ଦରକାର ।

ଏହିଭଳି କେତେଗୁଡ଼ିଏ ବୋତଲ ନେଇ ପୋଖରୀ ଭିତରେ କିଛି ଦୂର ଛଡ଼ାରେ ଭସାଇଦିଅ । ପୋଖରୀ ଭିତରେ ଗୋଟିଏ ରାସ୍ତା ଚିହ୍ନଟ ହୋଇଯିବ ।





# ଟାୟାର ଦୋଳି

ରଜ ଆସିଗଲେ ପ୍ରଥମେ ମନକୁ ଆସେ ପୋଡ଼ପିଠା ଓ ତା'ପରେ ଦୋଳିଖେଳ। ତିନିଦିନ ପାଳ କଟିପାଏ ଦୋଳି ଖେଳରେ। ସେ ଦୋଳି ତିଆରି ହୋଇଥାଏ ଦଉଡ଼ି ବା ବାଉଁଶରେ। ସାଇକେଲ ବା ଅନ୍ୟ ଟାୟାରରେ ବି ଦୋଳି ତିଆରି କରି ପିଲାମାନେ ଖେଳୁଥିବା ଦେଖିଥିବ। ଗୋଟିଏ ଟାୟାରରେ ଆଉ ଗୋଟିଏ ଟାୟାର ବାନ୍ଧି ସେମାନେ ଦୋଳି ତିଆରି କରିଥା'ନ୍ତି। କିନ୍ତୁ ସେଇ ଟାୟାରରେ ବି ଏମିତି ଦୋଳି ତିଆରି କରିହେବ ଯେଉଁଥିରେ ଅନେକ ବିଜ୍ଞାନ ତତ୍ତ୍ୱ ବି ରହିଛି। ସେହିଭଳି ଗୋଟିଏ ଦୋଳି ତିଆରି କରି ଦେଖିବା।

### କ'ଣ ଦରକାର

ସାଇକେଲ ବା ଲୁନା ଟାୟାର, କୁଅ ଦଉଡ଼ି ବା ମୋଟା ପ୍ଲାଷ୍ଟିକ ରସି, ବାଉଁଶ

### କିପରି କରିବ

ସାଦା ଟାୟାର ଦୋଳି କରିବା ପାଇଁ କେତେଗୁଡ଼ିଏ ସାଇକେଲ ଟାୟାର ଆଣ। ପ୍ରଥମ ଟାୟାରକୁ ଗଛ ଉପରେ ବାନ୍ଧିଦିଅ। ସେଥିରେ ଆଉ ଗୋଟିଏ ଟାୟାର ବାନ୍ଧ। ଏହିଭଳି ଟାୟାର ବାନ୍ଧି ବାନ୍ଧି ଦୋଳି ହୋଇପାରିବ।





ବିଜ୍ଞାନୀ ଟାୟାର ଦୋଳି କରିବା ପାଇଁ ଦୁଇଟି ଲମ୍ବା ବାଉଁଶ ପ୍ରାୟ ତିନି ମିଟର ଛଡ଼ାରେ ପୋତିଦିଅ। ଏହି ଦୂରତାରେ ଦୁଇଟି ବଡ଼ ଗଛ ଥିଲେ ବି ହେବ। ଏହା ଉପରେ ଆଉ ଗୋଟିଏ ବାଉଁଶ ଆଡ଼ି ବାଗରେ ବାନ୍ଧିଦିଅ।



ଦୁଇ କଡ଼ରୁ ପ୍ରାୟ ଅଧ ମିଟର ଛାଡ଼ି ଦୁଇଟି ଦଉଡ଼ି ବାନ୍ଧି ତଳକୁ ଝୁଲାଇ ଦିଅ ଓ ଏଥିରେ ଆଉ ଗୋଟିଏ ବାଉଁଶ ବାନ୍ଧିଦିଅ । ଏହି ବାଉଁଶଟି ଯେପରି ଆରାମରେ ଝୁଲି ପାରୁଥିବ ।

ଏହି ଝୁଲୁଥିବା ବାଉଁଶରୁ ଦୁଇ କଡ଼ରୁ ପ୍ରାୟ ଅଧ ମିଟର ଛାଡ଼ି ଦୁଇଟି ଦଉଡ଼ି ବାନ୍ଧି ତଳକୁ ଝୁଲାଇ ଦିଅ । ଏଥିରେ ତଳୁ ଏକା ଉଚ୍ଚତାରେ ଦୁଇଟି ଲୁନା ଟାୟାର ବାନ୍ଧିଦିଅ । ସାଇକେଲ ଟାୟାର ବି ହେବ । ଦୋଳିଟି ହୋଇଗଲା ।



ଦୋଳିର ଟାୟାର ଦୁଇଟିରେ ଗୋଡ଼ ଗଳାଇ ଦୁଇଜଣ ପିଲା ବସ । ଯାହାରି ଗୋଡ଼ ଯେପରି ତଳେ ଲାଗୁନଥିବ । ଜଣେ ଚୁପଚାପ ନହଲି ବସିବ ଓ ଆର ପିଲାଟିକୁ କେହି ପେଲିଦେଇ ଛାଡ଼ିଦେବ । ଦେଖିବ କିଛି ସମୟ ଝୁଲିବା ପରେ ପେଲା ଖାଇଥିବା ପିଲା ରହିଯିବ ଓ ଦ୍ୱିତୀୟ ପିଲାଟି ଆପେ ଆପେ ଝୁଲିବାକୁ ଆରମ୍ଭ କରିବ । କିଛି ସମୟ ପରେ ଦ୍ୱିତୀୟ ପିଲା ରହିଯିବ ଓ ପ୍ରଥମ ପିଲା ଝୁଲିବାକୁ ଲାଗିବ । ଏହିପରି ଜଣକ ପରେ ଜଣେ ଆପେ ଆପେ ଝୁଲିବେ । ପ୍ରତି ଥର କିନ୍ତୁ ତାଙ୍କର ଝୁଲିବା ସମୟ କମି କମି ଯିବ ଓ ଶେଷରେ ବନ୍ଦ ହୋଇଯିବ ।

ସାଧାରଣ ଦୋଳିଠାରୁ ଏ ଦୋଳିରେ ଖେଳିବା ବେଶୀ ମଜା ନୁହେଁ କି ?

# ଅନାବନା ଆକାରର ଗୋଲ ଛାଇ

ଦର୍ପଣରେ ସୂର୍ଯ୍ୟଙ୍କ ଛାଇ ପକାଇଥିବ । ବିଶେଷ କରି ସୂର୍ଯ୍ୟପରାଗ ବେଳେ ଦେଖିବା ପାଇଁ ସୂର୍ଯ୍ୟଙ୍କ ପ୍ରତିଛବିକୁ ପ୍ରକ୍ଷେପିତ କରି ଦେଖିଥିବ । ଯେତେବଡ଼ ବା ଯେଉଁ ଆକାରର ଦର୍ପଣ ହେଉ ଛାଇ ସବୁବେଳ ଗୋଟିଏ ପ୍ରକାରର ଦୁଏ ।

*କ'ଣ ଦରକାର*

ବିଭିନ୍ନ ଆକୃତିର ଭଙ୍ଗା ଦର୍ପଣ

*କିପରି କରିବ*



ଦର୍ପଣଟିଏ ଭାଙ୍ଗିଗଲେ ବିଭିନ୍ନ ଆକାରର ଓ ଆକୃତିର ଦର୍ପଣ ମିଳିଯିବ । ଏହାକୁ ସଂଗ୍ରହ କରି ରଖ । ସୂର୍ଯ୍ୟଙ୍କର ପ୍ରତିଛବିକୁ ଏଥିରେ ପ୍ରତିଫଳିତ କରି ଘର ଭିତରରେ ଅନ୍ଧାରୁଆ କାନ୍ଥରେ ପକାଅ । କେଉଁ ଆକାରର ପ୍ରତିଛବି ପଡ଼ୁଛି ? ଦର୍ପଣର ଆକାର ଓ ଆକୃତି ଯାହା ହେଲେ ବି ଛବି ସବୁବେଳେ ଗୋଲ ହିଁ ପଡ଼ିବ । ଏଥିପାଇଁ ଆଲୁଅର ଉତ୍ସ ବହୁତ ଦୂରରେ ରହିବା ଜରୁରୀ । କାନ୍ଥଠାରୁ ଦର୍ପଣର ଦୂରତା କମ୍ ବେଶି କରିବାକୁ ପଡ଼ିବ । ସୂର୍ଯ୍ୟଠାରୁ ଆସୁଥିବା ଆଲୁଅ ବହୁତ ଦୂରରୁ ଆସୁଛି । ସେଥିପାଇଁ ଯେକୌଣସି ଆକାର ଓ ଆକୃତିରେ ପ୍ରତିଫଳିତ କରାଇଲେ ବି ତାହା ଗୋଲ ପଡ଼ୁଛି ।

ଆଗରୁ ଦେଖିଥିବ ଯେ ଗଛ ତଳେ ପତ୍ର ଭିତର ଦେଇ ଆସୁଥିବା ସୂର୍ଯ୍ୟକିରଣ ବା କବାଟରେ ଛୋଟ କଣା ଥିଲେ ତା' ଭିତର ଦେଇ ପଡୁଥିବା ସୂର୍ଯ୍ୟର ଛବି ମଧ୍ୟ ଗୋଲ ହୋଇଥାଏ । ସୂର୍ଯ୍ୟ ପରାଗ ବେଳେ ପତ୍ର ଫାଙ୍କରେ ବା ଚାଳ କଣାରେ ସୂର୍ଯ୍ୟର ଖଣ୍ଡିଆ ପ୍ରତିବିମ୍ବ ଦେଖାଯିବ ।

# ପାଣି ଗଛର ଅମ୍ଳଜାନ ଛଡ଼ା

ସବୁ ଗଛ ନିଜର ଖାଦ୍ୟ ତିଆରି କରନ୍ତି । ଏହି ପ୍ରକ୍ରିୟାରେ ସେମାନେ ଅଙ୍ଗାରକାମ୍ଳ ବାଷ୍ପ ନେଇ ଅମ୍ଳଜାନ ଛାଡ଼ିଥା'ନ୍ତି । ଏହାକୁ କିଛି ପାଣି ଗଛ ନେଇ ଦେଖିପାରିବା ।

### କ'ଣ ଦରକାର

ବଡ଼ ସ୍ବଚ୍ଛ ପଲିଥିନ୍ ମୁଣି, ପାଣି ଗଛ, ସୂତା ବା ରବର ବ୍ୟାଣ୍ଡ, ଗାଡ଼ୁଆ ଥାଳି ବା ଟ୍ରେ

### କିପରି କରିବ

ଚିଙ୍ଗୁଡ଼ିଆ ଦଳ ଭଳି ସରୁ ପତ୍ରବାଲା କିଛି ପାଣି ଗଛ ଆଣ । ଗୋଟିଏ ବଡ଼ ସ୍ବଚ୍ଛ ପଲିଥିନ୍ ମୁଣିରେ ଏଗୁଡ଼ିକ ରଖ । ମୁଣିରେ ପାଣି ଭର୍ତ୍ତି କରିଦିଅ ଓ ମୁହଁ ଉପରକୁ କରି ଚିପି ସବୁ ପବନ ବାହାର କରିଦିଅ । ମୁହଁକୁ ଭଲ କରି ବାନ୍ଧିଦିଅ । ମୁହଁବନ୍ଧା ମୁଣିଟି ଯେପରି ଟିକିଏ ନୁଚୁପୁଚିଆ ରହିବ । ଏହାକୁ ଗୋଟିଏ ଅଳ୍ପ ଗାଡ଼ୁଆ ଥାଳି ବା ଟ୍ରେରେ ରଖି ଖରାରେ ରଖିଦିଅ ।





କିଛି ସମୟ ପରେ ପତ୍ର ଉପରେ ଛୋଟ ଛୋଟ ବୁନ୍ଦା ସବୁ ଦେଖାଯିବ । ଏହାର କିଛି ଅଂଶ ହେଉଛି ଅମ୍ଳଜାନ ବାଷ୍ପ । ଧୀରେ ଧୀରେ ଏହାର ପରିମାଣ ବଢ଼ିଯିବ ଓ ତାହା ଏକାଠି ହୋଇ ପଲିଥିନ୍ ମୁଣିର ଉପର କୋଣରେ ଜମିବ । ଏଥିରେ ଅମ୍ଳଜାନ ଅଛି କି ନାହିଁ ତାହା ପରୀକ୍ଷା କରି ଦେଖିବା ପାଇଁ କିଛି ସ୍ବତନ୍ତ୍ର ଉପକରଣ ଦରକାର ହେବ । ତେଣୁ ଆମେ କେବଳ ବାଷ୍ପ ବାହାରୁଥିବା କଥା କହିପାରିବା ।

# ଫିମ୍ପି ଚାଷ

ବିଭିନ୍ନ ପ୍ରକାରର ଫିମ୍ପିର ରେଣୁ ସବୁବେଳେ ପବନରେ ଉଡ଼ି ବୁଲୁଥାଏ। ଏଗୁଡ଼ିକ ଖାଲି ଆଖିକୁ ଦେଖା ଯାଏନାହିଁ। କିଛି ଆର୍ଦ୍ର ଜିନିଷ ପାଇଲେ ସେଥିରେ ସେମାନେ ବଢ଼ିଥା'ନ୍ତି। ସଢ଼ା ଫଳ, ପରିବା, ପାଉଁରୁଟି, ଓଦା କାଠ, ଲୁଗାରେ ଫିମ୍ପି ଲାଗିଥିବାର ଆମେ ଦେଖିଥିବା। ଏବେ କିଛି ଫିମ୍ପି ବଢ଼ାଇ ସେମାନଙ୍କୁ ଭଲ କରି ଦେଖିପାରିବା।

## *କ'ଣ ଦରକାର*

ରୋଷେଇ ଘରର ଅଳିଆ (ପାଉଁରୁଟି, କମଳା, କଖାରୁ, ପାଚିଲା ଅମୃତଭଣ୍ଡା, ନଡ଼ିଆ), ସ୍ୱଚ୍ଛ ଘୋଡ଼ଣୀ, ପ୍ଲାଷ୍ଟିକ ଥାଳିଆ

## *କିପରି କରିବ*

ପ୍ଲାଷ୍ଟିକ ଥାଳିଆରେ ପାଚିଲା କଖାରୁ (ଅନ୍ତି ଓ ମଞ୍ଜି ସହ), ପାଚିଲା କମଳା, ଖଣ୍ଡିଏ ପାଉଁରୁଟି, ପାଚିଲା ଅମୃତଭଣ୍ଡା ଖଣ୍ଡେ ରଖ। ଘରର ଧୂଳି କିଛି ଏସବୁ ଉପରେ ଛିଞ୍ଚିଦିଅ। ଅଳ୍ପ ପାଣି ଛିଞ୍ଚି ଏହାକୁ ଓଦାଳିଆ ରଖ। ବେଶୀ ପାଣି ଦେଲେ ସଢ଼ିଯିବ। ବାହାରୁ ଦେଖିହେବା ପାଇଁ ଗୋଟିଏ ସ୍ୱଚ୍ଛ ଘୋଡ଼ଣୀ ଘୋଡ଼ାଇଦିଅ।



ପ୍ରତିଦିନ ଲକ୍ଷ କର। କିଛିଦିନ ପରେ ସବୁଥିରେ ଫିମ୍ପି ବଢ଼ିଥିବାର ଦେଖିବ। ସେଗୁଡ଼ିକୁ ୨୦ ଗୁଣ ବଡ଼ କରିପାରୁଥିବା ଅଣୁବୀକ୍ଷଣ ଯନ୍ତ୍ରରେ ଦେଖ କିପରି ଦେଖାଯାଉଛି।

କେଉଁଥିରେ କିଭଳି ଫିମ୍ପି ହୋଇଛି, କେଉଁଥିରେ ଆଗ ହେଲା, ସେଗୁଡ଼ିକର ରଙ୍ଗ, ଗଠନ ଆଦି ଲେଖିରଖ।



# ମାଟିର ଘର

ମାଟି ଉପରର ଯେକୌଣସି ଆବାସର ନମୁନା ଗୋଟିଏ ବାକ୍ସରେ ତିଆରି କରି ଶ୍ରେଣୀ ଭିତରକୁ ଅଣାଯାଇପାରିବ । ଏଗୁଡ଼ିକୁ ମାଟିଘର (ଟେରାରିଅମ୍) କୁହାଯାଏ ।

### *କ'ଣ ଦରକାର*

ପୁରୁଣା କାଚ ମାଛଘର ବା ବଡ଼ କାଚ ଡାବା, ମାଟି, ଗଛ, ଘୋଡ଼ଣୀ ।

### *କିପରି କରିବ*



କାଚ ବା ସ୍ୱଚ୍ଛ ବାକ୍ସର ତଳେ କିଛି ମାଟି ବିଛାଇଦିଅ । ଗୋଟିଏ କୋଣରେ ଛୋଟ ପଥର ଗୋଟିଏ ଦୁଇଟି ରଖିଦିଅ । ମାଟିକୁ ପୁରା ସମତଳ ନ କରି ଉଚ୍ଚା ନିଚା କଲେ ତାହା ପ୍ରାକୃତିକ ଦେଖାଯିବ । ଛୋଟ ଗଛ, ଘାସବୁଦାକୁ ମାଟିରେ ଚାପି ସଜାଇଦିଅ ।

ଡେଙ୍ଗା ଗଛକୁ ପଛ ଆଡ଼କୁ ଓ ଛୋଟ ଗଛକୁ ସାମନା ଆଡ଼କୁ ରଖିଲେ ଭଲ ଦେଖାଯିବ । ଆଉ ଗୋଟିଏ କୋଣରେ ଛୋଟିଆ ପ୍ଲାଷ୍ଟିକ ଗିନାରେ ପାଣି ରଖି ଗିନାଟିକୁ ମାଟିରେ ପୋତିଦିଅ । କିଛି ପାଣି ଗଛ ଓ ଦଳ ଗିନା ଭିତରେ ଓ ଫର୍ଣ୍ଣ ଜାତୀୟ ଗଛ ପାଣି କଡ଼ରେ ଲଗାଯାଇପାରିବ । ମାଟିରେ ଅଳ୍ପ ପାଣି ଛିଞ୍ଚି ଘୋଡ଼ଣୀ ଢାଙ୍କିଦିଅ । ଲକ୍ଷ ରଖ, ଯେପରି ଗଛଗୁଡ଼ିକ ଶୁଖିଯିବ ନାହିଁ । ଏଥିପାଇଁ ମଝିରେ ମଝିରେ ଅଳ୍ପ ପାଣି ଛିଞ୍ଚିବାକୁ ହେବ ।



ଏହି ମାଟି ଘରଟି ଗୋଟିଏ ସାଧାରଣ ପଡ଼ିଆର ପ୍ରତିରୂପ ହେବ । ମାଛଘରେ କେବଳ ବାଲି, ଛୋଟ ଗୋଡ଼ି ଦେଇ ସିଝୁ ଲଗାଇଲେ ତାହା ମରୁଭୂମିର ପ୍ରତିରୂପ ହେବ । କାଦୁଅ ମାଟି ଓ ପାଣି ଦେଇ ପାଣିକୂଳିଆ ଗଛ ଲଗାଇଲେ ତାହା ସନ୍ତସନ୍ତିଆ ଭୂଇଁର ପ୍ରତିରୂପ ହେବ ।

# ବାକ୍ସରେ ବଗିଚା

ସବୁବେଳେ ପୁରୁଣା ମାଛଘର ମିଳିବା ସମ୍ଭବ ହୋଇନପାରେ। କାଚର ମାଛଘର ନମିଳିଲେ ବି ପୁରୁଣା କାଠବାକ୍ସରେ ବି ଏହିଭଳି ମାଟିଘର କରିହେବ।

## କ'ଣ ଦରକାର

ପୁରୁଣା କାଠପେଟି (ହାର୍ଡୱେର ବା ଫଳ ଦୋକାନରେ ଜିନିଷ ପ୍ୟାକିଙ୍ଗ୍ ପାଇଁ ବ୍ୟବହାର କରାଯାଏ), ହାତୁଡ଼ି, ଛୋଟକଣ୍ଟା, ପଲିଥିନ୍ ସିଟ୍, କରତ, ଡ୍ରଇଁ ପିନ୍, ମାଟି, ପ୍ଲାଷ୍ଟିକ୍ ଗିନା, ଗଛ, ଏସିଟେଟ ସିଟ୍।

## କିପରି କରିବ

ବାକ୍ସର ଉପର ଢାଙ୍କୁଣୀ ଓ ସାମନା ପଟ (ଚଉଡ଼ା ପଟ) କାଠ ବାହାର କରିଦିଅ। ହାତୁଡ଼ିରେ ଧୀରେ ଧୀରେ ଠୁକେଇ କରି ଏହା କାଢ଼ିହେବ। ସାମନାର ଉପର ପଟକୁ ଗୋଟିଏ ଛୋଟିଆ କାଠ ପଟି ଛାଡ଼ିଦେବ। କାଠପଟି ଛାଡ଼ିବାକୁ ସୁବିଧା ନ ହେଲେ ପରେ ଖଣ୍ଡେ ସରୁ କାଠପଟି କଣ୍ଟା ଦେଇ ଲଗାଇବ। ଏଠି ପଟିଟି ଦୁଇପଟର କାଠକୁ ଧରି ରଖିବ।





ବାକ୍ସର ତଳେ ଓ ତିନି କଡ଼ରେ ପଲିଥିନ୍ ସିଟ୍ ଲଗାଇଦିଅ। ତାହେଲେ ବାକ୍ସଟି ଜଳରୋଧୀ ହୋଇଯିବ। ସାମନା ଖୋଲାପଟରେ ଏସିଟେଟ୍ ସିଟ୍ ଲଗାଅ ଓ ତାକୁ ଉପର ପାଏ ଲମ୍ବାଇଦିଅ। ଏହି ସିଟ୍‌ଟି ଉପରେ ଘୋଡ଼ଣୀ ଭଳି ରହିବ। ଏସିଟେଟ୍ ସିଟ୍ ଷ୍ଟେସନାରୀ ଦୋକାନରେ ମିଳିବ। (ସାମନା ପଟର ସରୁ କାଠ ପଟାଟି ଏସିଟେଟ୍ ସିଟ୍ ସହ ଲଗାଇଦେଲେ ସିଟ୍‌ଟି ଖସିବନାହିଁ।)

ସାମନା ପଟର ଏସିଟେଟ୍ ସିଟ୍‌ଟିକୁ ଟେପ୍ ଓ ଡ୍ରଇଁପିନ୍ ଦେଇ ବାକ୍ସ ସହ ଲଗାଇ ଦିଅ। ଏସିଟେଟ୍ ସିଟ୍ ନ ମିଳିଲେ ପଲିଥିନ୍ ସିଟ୍ ଲଗାଯାଇ ପାରିବ। କିନ୍ତୁ ଏହା ଏସିଟେଟ୍ ଭଳି ଏତେ ସ୍ୱଚ୍ଛ ହେବନାହିଁ। ତଳେ ମାଟି ଦେଇ ଆଗଭଳି ପାଣି, ଗଛ, ପଥର ଆଦି ସଜାଇ ଦିଅ।

ଏହାକୁ କାଗଜ ପେଟିରେ ବି କରିହେବ । କାଗଜ ପେଟିରେ କଲାବେଳେ ସାବଧାନ ହେବ ଯେପରି ତଳେ ବେଶୀ ମାଟି ନ ରହେ । ନହେଲେ ମାଟିର ଓଜନରେ ବାକ୍ସର ତଳ ଗଳିପଡ଼ିପାରେ । କାଗଜ ପେଟିରେ କଲାବେଳେ ସେହି ଆକାରର ଗୋଟିଏ ପ୍ଲାଷ୍ଟିକ ବା ଆଲୁମିନିଅମ ଟ୍ରେ ପେଟି ଭିତରେ ତଳେ ରଖି ତା'ଉପରେ ମାଟି ଦିଆଯାଇପାରିବ ।

# ପାଣିଘର

ଅନେକ ଜାଗାରେ କାଚ ଘରେ ମାଛ ଥିବାର ଆମେ ଦେଖିଥିବା । ଏଗୁଡ଼ିକ ଘର ସଜାଇବା ପାଇଁ କାମରେ ଲଗାପାଏ । କିନ୍ତୁ ପାଣିଗଛ ବିଷୟରେ ଅଧିକ ଜାଣିବା ପାଇଁ ମଧ୍ୟ ଏଗୁଡ଼ିକ ବ୍ୟବହାର କରାଯାଇ ପାରିବ ।

### *କ'ଣ ଦରକାର*

କାଚ ବାକ୍ସ, ଘୋଡ଼ଣୀ, ଚଉଡ଼ା ମୁହଁବାଲା ୨ ଲିଟରିଆ ଡ଼ବା, ପାଣିଗଛ

### *କିପରି କରିବ*

ଗୋଟିଏ କାଚବାକ୍ସ ନିଅ । ସେଥିରେ ପ୍ରାୟ ଅଧାଯାଏଁ ପାଣି ଭର୍ତ୍ତିକର । ପାଣିରେ ନିଶାଦଳ, ଚିଙ୍ଗୁଡ଼ିଆଦଳ, ଲେମ୍ନା, ପିଷ୍ଟିଆ ଭଳି ପାଣିଗଛ ରଖିଦିଅ । ପ୍ରତିଦିନ ସେମାନଙ୍କୁ ଲକ୍ଷ୍ୟ କର ଏବଂ ଯାହା ଦେଖୁଛ ଟିପାଖାତାରେ ଲେଖିରଖ ।





କାଚବାକ୍ସ ସବୁବେଳେ ମିଳିନପାରେ । ତାହାପୁଣି ବେଶ୍ ଦାମିକା । ତେଣୁ ୨ ଲିଟରିଆ ଚଉଡା ମୁହଁ ବାଲା ପ୍ଲାଷ୍ଟିକ ଡବାରେ ବି ପାଣି ରଖି ପାଣିଗଛ ରଖିପାରିବ । ମଝିରେ ମଝିରେ ପାଣି ବଦଳାଇ ସଫା ପାଣି ଦେବାକୁ ହେବ ।

# ସିରିଞ୍ଜ ପମ୍ପ

କୂଅରୁ ପାଣି ଉଠାଇବା ପାଇଁ କେତେ ପ୍ରକାରର ପମ୍ପ ବ୍ୟବହାର କରାଯାଏ। ତମେ ବି ଆଗରୁ କେତେ ପ୍ରକାରର ପମ୍ପ ତିଆରି କରିଥିବ। ଏଠି ଆମେ ସିରିଞ୍ଜରୁ ପମ୍ପ ତିଆରି କରିବା।

### କ'ଣ ଦରକାର

ଦୁଇଟି ୧୦ ମି.ଲି. ସିରିଞ୍ଜ, ଖାଲି ରିଫିଲ, ସାଇକେଲ୍ ବଲ୍, ନରମ ସାଲାଇନ୍ ନଳୀ ବା ସାଇକେଲ ଭାଲ୍ଭ୍ ଟିଉବ୍, ପତଳା କାଠପଟା

### କିପରି କରିବ

ଗୋଟିଏ ସିରିଞ୍ଜରୁ ଚାପିବା ଦଣ୍ଡକୁ ବାହାର କରି ଭିତରେ ଗୋଟିଏ ସାଇକେଲ ବଲ୍ ପୂରାଇଦିଅ। ସିରିଞ୍ଜର ସରୁ ମୁହଁ ପାଖରେ କଡ଼କୁ ଗୋଟିଏ ଛୋଟ କଣା କର ଓ ସେଥିରେ 'ଛୋଟ ରିଫିଲ ଖଣ୍ଡେ ପୂରାଇଦିଅ ଯେପରି ତାହା ବେଶ୍ ଜୋରରେ ଭିଡ଼ିହୋଇ ରହିବ। ରିଫିଲ କଡ଼ରେ କଣା ମୁହଁରେ ଡେଣ୍ଡ୍ରାଇଟ୍ ଅଠା ଦେଇଦିଅ। ସିରିଞ୍ଜର ସରୁ ମୁହଁରେ ପ୍ରାୟ ୧୫ ସେ.ମି. ଲମ୍ବା ନଳୀଟିଏ ଲଗାଇ ଦିଅ। ରିଫିଲ ଦେହରେ ନରମ ସାଲାଇନ୍ ନଳୀ ବା ଭାଲ୍ଭ୍ ଟିଉବ ଲଗାଇ ଦିଅ।



ଦ୍ୱିତୀୟ ସିରିଞ୍ଜ ଭିତରେ ମଧ୍ୟ ପ୍ରଥମ ସିରିଞ୍ଜ ପରି ସାଇକେଲ୍ ବଲ୍ ପୂରାଅ ଏବଂ କଣା କରି ରିଫିଲ ଖଣ୍ଡିଟିଏ ଲଗାଇ ଦିଅ। ପ୍ରଥମ ସିରିଞ୍ଜର ରିଫିଲରେ ଲାଗିଥିବା ନରମ ସାଲାଇନ୍ ପାଇପକୁ ଦ୍ୱିତୀୟ ସିରିଞ୍ଜର ସରୁମୁହଁରେ ଲଗାଇଦିଅ। ଏହି ଦୁଇ ସିରିଞ୍ଜକୁ ଧରି ରଖିବା ପାଇଁ କାଠ ପଟାରେ ଦୁଇଟି କଣାକରି ରଖ।

ଏଥର ପ୍ରଥମ ସିରିଞ୍ଜର ଚାପିବା ଦଣ୍ଡକୁ ତଳ ଉପର କର। ଦେଖିବ କିଛି ସମୟ ପରେ ଦ୍ୱିତୀୟ ସିରିଞ୍ଜର ରିଫିଲ ବାଟରେ ଛାଟିହୋଇ ପାଣି ବାହାରିବ।



*ବୋତଲ ବାଜା*

ଭାଙ୍ଗ ଭାଙ୍ଗ ହୋଇଥିବା ଗୋଟିଏ ପ୍ଲାଷ୍ଟିକ ପାଣି ବୋତଲ ନିଅ । ଗୋଟିଏ ଲମ୍ବା ପେନ୍‌ସିଲ୍ ନେଇ ବା' ଉପରେ ଘଷ । ବିଭିନ୍ନ ପ୍ରକାରର ଶବ୍ଦ ବାହାରିବ । ବୋତଲରେ କମ୍ ବେଶୀ ପାଣି ଭର୍ତ୍ତି କରି ଦେଖ କ'ଣ ହେଉଛି ।





*ବୋତଲ ହ୍ୱିସିଲ*

ଗୋଟିଏ ଖାଲି ପାଣି ବୋତଲ ନିଅ । ମୁହଁରେ ଧୀରେ ଧୀରେ ଫୁଙ୍କ । ସେଥିରେ ଅଳ୍ପ ପାଣି ଭରି ଫୁଙ୍କ । କ'ଣ ଅଲଗା ହେଉଛି ? ପ୍ଲାଷ୍ଟିକ ବୋତଲ ବଦଳରେ କାଚ ବୋତଲ ନେଇ ଦେଖ କ'ଣ ହେଉଛି ।

ଏହିଭଳି ସୋଡା ଷ୍ଟ୍ର, ରବର ବ୍ୟାଣ୍ଡ, ସୋଡା ଠିପି ଆଦିରେ ମଧ୍ୟ ଅନେକ ପ୍ରକାରର ବାଜା ତିଆରି କରିହେବ ।

# ରବର ଷ୍ଟାମ୍ପ

ସ୍କୁଲ, କଲେଜ, ଅଫିସ୍, ଦୋକାନ ଆଦିରେ ରବର ଷ୍ଟାମ୍ପ ବ୍ୟବହାର ହୋଇଥିବାର ଦେଖିଥିବା। ଆମ ନାଁରେ ଗୋଟିଏ ରବର ଷ୍ଟାମ୍ପ ତିଆରି କରି ରଖିଥିବା। ଏସବୁ ଷ୍ଟାମ୍ପ ବାଲାଠାରୁ ଆମେ ତିଆରି କରାଇଥାଉ। ଆମେ କିନ୍ତୁ ନିଜେ ବି ଷ୍ଟାମ୍ପ ତିଆରି କରିପାରିବା।

### କ'ଣ ଦରକାର

ପୁରୁଣା ସାଇକେଲ ଟ୍ୟୁବ୍, କାଠ ଟୁକୁଡ଼ା, କଇଁଚି, ଡେନ୍‌ଡ୍ରାଇଟ୍ ଅଠା

### କିପରି କରିବ

ଖଣ୍ଡେ ପୁରୁଣା ସାଇକେଲ ଟ୍ୟୁବ୍ ଆଣ। ତାକୁ ମଝିରେ ଲମ୍ବା ଭାବରେ କାଟି ଖୋଲି ଦେଲେ ଖଣ୍ଡେ ରବର ପଟି ମିଳିଯିବ।





ଏହା ଉପରେ ଘର, ଗଛ ଆଦି ଚିତ୍ର କର ଓ ଚିତ୍ରଗୁଡ଼ିକୁ କଇଁଚିରେ କାଟି ବାହାର କରିଆଣ। ରବର ଚିତ୍ରକୁ କାଠଖଣ୍ଡରେ ଅଠା ଦେଇ ଲଗାଇ ଦିଅ।

ଏବେ ତୁମର ଷ୍ଟାମ୍ପ ତିଆରି ହୋଇଗଲା। ଷ୍ଟାମ୍ପ ପ୍ୟାଡ୍ ଦେହରେ ଷ୍ଟାମ୍ପକୁ ଚାପି କାଗଜ ଉପରେ ଚପେଇ ଦିଅ। ତୁମେ କରିଥିବା ଚିତ୍ର ଆସିଯିବ। ଏପରି ନିଜର ନାଁ ତଥା ଅନ୍ୟାନ୍ୟ ଚିତ୍ରର ଷ୍ଟାମ୍ପ ସବୁ କରିହେବ।



## ସହାୟକ ପୁସ୍ତକ ସୂଚୀ

1. Creative Lesson Plan on Waste, ENRE (Ecology & Natural Resource Education) Project, Kolkata, 2005
2. Garbage To Gardens, CEE, Ahmedabad, 1999
3. Aha! Activities, Arvind Gupta, Evlavya, Bhopal, 2007
୪. ପ୍ରକୃତି ପରଖ, ସୃଜନିକା, ୨୦୦୩

## ସୃଜନିକାର କିଛି ପରିବେଶ ବହି

## ଅଳିଆରୁ ମଜା କାମ

ଚାରିପାଖରେ ଏବେ କୁଢ଼ କୁଢ଼ ମଇଳା ଜମିରହୁଛି । ସମସ୍ତେ ସେଇ ବାଟ ଦେଇ ଗଲାବେଳେ ନାକରେ କନା ଦେଇ ଚାଲିଯାଉଛେ, କିନ୍ତୁ ସେସବୁ ସଫା କରିବା ବା କମାଇବା ଦିଗରେ ଚେଷ୍ଟା କରୁନାହେଁ । ଫଳରେ ସମସ୍ୟା ଦିନକୁ ଦିନ ବଢୁଛି । ଏବିଷୟରେ ପିଲାଙ୍କୁ ସଚେତନ କରାଇ ଗୋଟିଏ ସକାରାତ୍ମକ ବାଟ ବାହାର କରିବା ହେଉଛି ବହିଟିର ଲକ୍ଷ୍ୟ । ଏଥିରେ ୫୩ଟି ମଜା କାମ ରହିଛି ଯାହା ପିଲାମାନେ କରିପାରିବେ ଏବଂ ମଜା ପାଇପାରିବେ ।

## ପୁଷ୍ପଶ୍ରୀ ପଟ୍ଟନାୟକ

ସୃଜନିକା ସହ ଯୋଡ଼ା ବିଜ୍ଞାନ କର୍ମୀ ବହିଟିର ଚୂଡ଼ାନ୍ତ ଉପସ୍ଥାପକ । ବିଭିନ୍ନ ସମୟରେ ରବିବାର କ୍ଲବରେ ହୋଇଥିବା କାମ ବହିଟିର ମୂଳ ଆଧାର । ସୃଜନିକାର ଅନ୍ୟ ସବୁ କାମ ଓ ପ୍ରକାଶନ ସହ ମଧ୍ୟ ସେ ଯୋଡ଼ା ।



**ସୃଜନିକା**

ଜାଗମରା, ଡାକ: ଖଣ୍ଡଗିରି,
ଭୁବନେଶ୍ୱର ୭୫୧୦୩୦ ମୂଲ୍ୟ: ୨୦.୦୦ ଟଙ୍କା